# ବେଦ ଓ କୁର୍ଆନରେ
# ବ୍ରହ୍ମତତ୍ତ୍ୱ

ଶକୀଲ୍ ଅହମଦ

iqra
RESEARCH ACADEMY

ଇକ୍ରା ରିସର୍ଚ୍ଚ ଏକାଡେମୀ

# ବେଦ ଓ କୁରଆନର ବ୍ରହ୍ମତତ୍ତ୍ୱ

ଲେଖକ :
ଶକୀଲ ଅହମଦ



ପ୍ରକାଶକ :
ଇକ୍‌ରା ରିସର୍ଚ୍ଚ ଏକାଡେମୀ
ମେଟ୍ରୋ ମଞ୍ଜିଲ, ଦିୱାନ ବଜାର
କଟକ - ୭୫୩ ୦୦୧

ପ୍ରଥମ ସଂସ୍କରଣ : ୨୦୧୩

ଅକ୍ଷରସଜ୍ଜା :
ସାହୁ କମ୍ପ୍ୟୁଟର ୟୁନିଟ୍, କଟକ

ମୁଦ୍ରଣ :
ଜଗନ୍ନାଥ ପ୍ରୋସେସ୍ ପ୍ରାଃ ଲି., କଟକ

ମୂଲ୍ୟ :
ଟ.୬୦.୦୦

**VEDA O' QURANRA BRAHMATATWA**

**Author :**
Shakeel Ahmed



**Publisher :**
**IQRA RESEARCH ACADEMY**
Metro Manzil, Dewan Bazar
Cuttack-753 001

**New Edition : 2013**

**Laser Typeset :**
Sahoo Computer Unit, Cuttack

**Printers :**
Jagannath Process Pvt. Ltd., Cuttack

**Price : 60.00**

بِسْمِ اللّٰهِ الرَّحْمٰنِ الرَّحِيْمِ

ଅସୀମ ଦୟାବାନ, ଅନନ୍ତ କରୁଣାଶୀଳ ଅଲ୍ଲାହ୍‌ଙ୍କ ନାମରେ

# ମୁଖବନ୍ଧ

ହିନ୍ଦୁ ଓ ମୁସଲମାନ ଆମ ଦେଶର ଦୁଇଟି ବଡ଼ ସଂପ୍ରଦାୟ । ବହୁ ଜନବସତିରେ ସେମାନେ ଏକାଠି ବସବାସ କରନ୍ତି, ମାତ୍ର ଅଧିକାଂଶ ପରସ୍ପରର ଧର୍ମ ଓ ସଂସ୍କୃତି ବିଷୟରେ ଜାଣି ନ ଥାଆନ୍ତି । ପଡୋଶୀର ଗ୍ରନ୍ଥ ବିଷୟରେ ଜାଣିବା ତ ଦୂରର କଥା, ନିଜ ଗ୍ରନ୍ଥରେ କ'ଣ ଲେଖାଯାଇଛି, ତାହା ମଧ୍ୟ ଆମେ ଭଲ ରୂପେ ଜାଣି ନଥାଉ । ଧର୍ମଗ୍ରନ୍ଥଗୁଡ଼ିକ କିନ୍ତୁ ଦାମୀ କପଡ଼ାରେ ବନ୍ଧାହୋଇ ଯତ୍ନ ସହକାରେ ଘରେ ରଖାଯାଇଥାଏ । ପରସ୍ପରର ଧର୍ମ ଓ ସଂସ୍କୃତି ସମ୍ପର୍କରେ ନ ଜାଣିବା ଯୋଗୁଁ ଆମ ଭିତରେ ବୁଝାମଣାର ଅଭାବ ରହେ । ସାଂପ୍ରଦାୟିକ ଶକ୍ତିଗୁଡ଼ିକ ଏହାର ସୁଯୋଗ ନେଇ ଘୃଣା ଓ ବିଦ୍ୱେଷର ମଞ୍ଜି ବୁଣନ୍ତି, ଯାହା ଶାନ୍ତି ଓ ସଂହତି ପଥରେ ଅନ୍ତରାୟ ସୃଷ୍ଟି କରେ । ତେଣୁ ଆମେ ପରସ୍ପରକୁ ବୁଝିବାର ଆବଶ୍ୟକତା ରହିଛି ।

ଅନେକ ଲୋକଙ୍କର ଧାରଣା ଯେ ହିନ୍ଦୁମାନଙ୍କର 'ବ୍ରହ୍ମ' ଏବଂ ମୁସଲମାନମାନଙ୍କର 'ଅଲ୍ଲାହ୍' ଭିନ୍ନ ଭିନ୍ନ । ଉଭୟ ଧର୍ମର ବିଦ୍ୱାନ ଯଦି ପରସ୍ପରର ଧର୍ମଶାସ୍ତ୍ରର ନିରପେକ୍ଷ ଅଧ୍ୟୟନ କରନ୍ତେ, ତେବେ ଅନେକ ଅଜଣା କଥା ଜାଣିପାରନ୍ତେ । ଇସଲାମ ଓ ସନାତନ ଧର୍ମଶାସ୍ତ୍ରରେ ଅନେକ ସାମଞ୍ଜସ୍ୟ ରହିଛି । ମୋ ମତରେ, ଯଦି ଇସଲାମ ସହିତ କୌଣସି ଧର୍ମର ଗଭୀର ନିକଟତା ଥାଏ, ତେବେ ତାହା ହେଉଛି ସନାତନ ଧର୍ମ । ଆଲୋଚ୍ୟ ପୁସ୍ତକଟି ପାଠକମାନଙ୍କୁ ଏହାର ଯଥେଷ୍ଟ ପ୍ରମାଣ ଦେଇପାରିବ । ହିନ୍ଦୁ-ମୁସଲିମ ସଂପର୍କକୁ ଅଧିକ ମଧୁର କରିବାର ଲାଳସା ମୋତେ ଏହି ପୁସ୍ତକଟିକୁ ଲେଖିବାର ଉତ୍ସାହ ଦେଇଛି ।

ପ୍ରାୟ ସବୁ ଧର୍ମଶାସ୍ତ୍ର ଈଶ୍ୱର 'ଏକ' ବୋଲି କହନ୍ତି, କିନ୍ତୁ ଈଶ୍ୱରତତ୍ତ୍ୱ ଅନେକ ଧର୍ମରେ ବିବାଦୀୟ । ଆଜି ବିଶ୍ୱର କୌଣସି ଧର୍ମଗ୍ରନ୍ଥର ଏକ ନିର୍ଦ୍ଦିଷ୍ଟ ଅନୁବାଦ ସେହି ଧର୍ମର ସବୁ ଅନୁଗାମୀଙ୍କ ଦ୍ୱାରା ସର୍ବସମ୍ମତ ରୂପେ ଗ୍ରହଣୀୟ

ହୋଇପାରି ନାହିଁ । ଧର୍ମଶାସ୍ତ୍ର ସମାନ ରହିଥିବା ସତ୍ତ୍ୱେ ଶାସ୍ତ୍ରବିତ୍‌ମାନେ ବ୍ରହ୍ମତତ୍ତ୍ୱର ଏକ ନିର୍ଦ୍ଦିଷ୍ଟ ମତବାଦ ସହ ଏକମତ ହୋଇପାରି ନାହାନ୍ତି । ଏହା ଫଳରେ ଈଶ୍ୱରଙ୍କ ସମ୍ପର୍କରେ ଅନେକ ମତବାଦ ସୃଷ୍ଟି ହୋଇଯାଇଛି ଏବଂ ସାଧାରଣ ମଣିଷଟି ପାଇଁ ସ୍ରଷ୍ଟାଙ୍କ ପରିଚୟ ରହସ୍ୟମୟ ହୋଇଯାଇଛି । ସମସ୍ତଙ୍କ ମାଲିକ ଜଣେ । ଇସଲାମ ଓ ବୈଦିକ ଭକ୍ତିମାର୍ଗ ମଧ୍ୟ ଏକେଶ୍ୱରବାଦ ଉପରେ ଆଧାରିତ । ମତଭେଦ ତ ସବୁ ଧର୍ମରେ ଅଳ୍ପ ବହୁତ ରହିଛି । ଇସଲାମ ଏହାର ବ୍ୟତିକ୍ରମ ନୁହେଁ । ଇସଲାମ ନାମରେ ମଧ୍ୟ ବହୁତ କିଛି କରାଯାଏ ଯାହା ପଛରେ ଶାସ୍ତ୍ରୀୟ ସ୍ୱୀକୃତି ନାହିଁ । କିନ୍ତୁ ଈଶ୍ୱରବାଦ ଇସଲାମରେ ବିବାଦୀୟ ନୁହେଁ ।

ଏହି ପୁସ୍ତକଟିରେ ମୁଁ ଇସଲାମର ବ୍ରହ୍ମତତ୍ତ୍ୱର ବ୍ୟାଖ୍ୟା କରିବା ସହିତ ସନାତନ ଧର୍ମ ସହ ଏହାର ତୁଳନାତ୍ମକ ଆଲୋଚନା କରିଛି । ଉଦ୍ଦେଶ୍ୟ ହେଉଛି ପାଠକମାନଙ୍କୁ କେବଳ ଏତିକି ଜଣାଇବା ଯେ ହିନ୍ଦୁ ଓ ମୁସଲମାନଙ୍କର ଈଶ୍ୱର ଭିନ୍ନ ଭିନ୍ନ ନୁହନ୍ତି । ଯେଉଁ ପରମ ପବିତ୍ର ସତ୍ତାଙ୍କୁ ବେଦ ଓ ବେଦାନ୍ତରେ 'ବ୍ରହ୍ମ' କୁହାଯାଇଛି, ତାଙ୍କୁ ହିଁ କୁରଆନରେ 'ଅଲ୍ଲାହ୍' କୁହାଯାଇଛି । କେବଳ ଭାଷାର ପ୍ରଭେଦ । ବିଶ୍ୱପିତାଙ୍କୁ ଏକ ମାନିଲେ ହିଁ ତାଙ୍କ ସନ୍ତାନମାନଙ୍କ ମଧ୍ୟରେ ଏକତା ଓ ଭ୍ରାତୃଭାବ ଆସିପାରେ । ଧର୍ମ ସମ୍ପ୍ରଦାୟଗୁଡ଼ିକ ପରସ୍ପର ମଧ୍ୟରେ ଥିବା ମତଭେଦକୁ ଭୁଲିଯାଇ ସେମାନଙ୍କ ମଧ୍ୟରେ ଥିବା ସମାନତାକୁ ଗ୍ରହଣ କରିନେଲେ ମାନବ ସମାଜରେ ସଂହତି ଓ ସହାବସ୍ଥାନ ସହଜ ହୋଇଯିବ ।

ପୁସ୍ତକଟି ଏକ ସୂଚନାଧର୍ମୀ ପୁସ୍ତକ ଏବଂ ପାଠକଙ୍କ ଜ୍ଞାନବର୍ଦ୍ଧନ ପାଇଁ ଉଦ୍ଦିଷ୍ଟ । ପାଠକବନ୍ଧୁମାନଙ୍କୁ ମୋର ବିନମ୍ର ଅନୁରୋଧ, ସେମାନେ ଏହାକୁ କୌଣସି ଧର୍ମ ବା ସମ୍ପ୍ରଦାୟ ପ୍ରତି ଅସମ୍ମାନ ମନେ କରିବେ ନାହିଁ । ଭଗବତବିଶ୍ୱାସ ମଣିଷର ବ୍ୟକ୍ତିଗତ ରୁଚି । ଧର୍ମାଚରଣରେ ଆମେ ସବୁ ସ୍ୱାଧୀନ । ଏ କ୍ଷେତ୍ରରେ କେବଳ ଆମ ବିଚାରଧାରା ଉଦାର ହେବା ଉଚିତ ।

ଅୟଂ ନିଜଃ ପରୋବେତି ଗଣନା ଲଘୁଚେତସାମ୍
ଉଦାରଚରିତାନାଂ ତୁ ବସୁଧୈବ କୁଟୁମ୍ବକମ୍ ।

ଉଚ୍ଚମନା ଲୋକେ ଉଚ୍ଚ ବିଚାର ରଖନ୍ତି । ଜ୍ଞାନର ଶିଖର ସ୍ତରକୁ ଆସିଲେ ଦୃଷ୍ଟି ମଧ୍ୟରେ ଉଦାରତା ଜନ୍ମ ନିଏ । ସମଗ୍ର ବିଶ୍ୱ ମୋ ଈଶ୍ୱରଙ୍କର ଏବଂ ସବୁ ମଣିଷ ତାଙ୍କ ପରିବାର, ତେଣୁ ସମସ୍ତେ ମୋର । ଏହି ମହତ ବିଚାରଧାରା ପ୍ରତ୍ୟେକ ମଣିଷର ରହିବା ଉଚିତ । ଜାତି, ଗୋଷ୍ଠୀ ବା ସଂପ୍ରଦାୟର ଊର୍ଦ୍ଧ୍ୱକୁ ଉଠି ବାସ୍ତବ ଧର୍ମ ଦୃଷ୍ଟିରେ ଦେଖିଲେ ସାରା ବିଶ୍ୱ ଆପଣାର ମନେହେବ ଏବଂ ପ୍ରତ୍ୟେକ ରକ୍ତମାଂସର ମଣିଷ ନିଜ କୁଟୁମ୍ବ ବୋଲି ମନେହେବ । ମନରେ ଅନ୍ୟ ମଣିଷଟି ପାଇଁ ଦରଦ ଓ ଆତ୍ମୀୟତା ଜାତ ହେବ । ଅନ୍ୟର କଲ୍ୟାଣ ପାଇଁ ମନ ବଳିବ । ତେବେ ଯାଇ ଆମେ ବେଦବାଣୀ 'ଭ୍ରାତରଃ ମନୁଜାଃ ସର୍ବେ, ସ୍ୱଦେଶୋ ଭୁବନ ତ୍ରୟମ୍' ବା କୁରଆନ୍ ବାଣୀ "ଇନ୍ନା ହାଜିହି ଉମ୍ମତୁକୁମ ଉମ୍ମତଓଁ ୱାହିଦା"ର ମହତ୍ତ୍ୱ ଉପଲବ୍ଧି କରିପାରିବା ।

ଡଃ. ବୈଷ୍ଣବ ଚରଣ ସାମଲ ଏବଂ ଡଃ. କାଳୀପ୍ରସନ୍ନ ଶତପଥୀ ଏହି ପୁସ୍ତକଟିର ସମୀକ୍ଷା କରିବା ସହ ଏଥିରେ ଆବଶ୍ୟକୀୟ ସଂଶୋଧନ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ ।

ଏହି ପୁସ୍ତକଟି ବିଶ୍ୱର ମହାନ ଗ୍ରନ୍ଥମାନଙ୍କର ଉଦ୍ଧୃତି ବହନ କରିଛି । ତେଣୁ ଏହାର ପବିତ୍ରତା ରକ୍ଷା କରିବା ପାଇଁ ଅନୁରୋଧ ।

୨୮ ଜୁଲାଇ, ୨୦୧୩ **ଶକୀଲ ଅହମଦ**

ଗ୍ରାମ/ପୋ.-ମୁକୁନ୍ଦଦାଶପୁର
ଭାୟା-ପିପିଲି, ଜି.-ଖୋର୍ଦ୍ଧା
ପିନ୍ - ୭୫୨୧୦୪

**ଫୋନ୍ ନଂ - 9861269764**

# 'ବ୍ରହ୍ମତତ୍ତ୍ୱ' ସମ୍ପର୍କରେ

ଡ଼ଃ ବୈଷ୍ଣବ ଚରଣ ସାମଲ
ଅବସରପ୍ରାପ୍ତ ପ୍ରଫେସର
ବିଶ୍ୱଭାରତୀ, ଶାନ୍ତିନିକେତନ

'ବେଦ ଓ କୁରଆନର ବ୍ରହ୍ମତତ୍ତ୍ୱ' ଶୀର୍ଷକ ପୁସ୍ତକଟିଏ ପ୍ରଣୟନ କରି ଶ୍ରୀଯୁକ୍ତ ଶକୀଲ୍ ଅହମଦ ଉଭୟ ମୁସଲମାନ ଓ ହିନ୍ଦୁ ସମ୍ପ୍ରଦାୟଙ୍କ ନିକଟରେ ଯେ ଧନ୍ୟବାଦର ପାତ୍ର ହୋଇପାରିଛନ୍ତି, ପୁସ୍ତକ ସମ୍ପର୍କରେ କିଛି ଆଲୋଚନା କରିବା ପୂର୍ବରୁ ଏହି ମତ ମୁଁ ଗଭୀର ଆତ୍ମବିଶ୍ୱାସର ସହିତ ପ୍ରକାଶ କରୁଅଛି । ଇକ୍‌ରା ରିସର୍ଚ୍ଚ ଏକାଡ଼େମୀ ଏପରି ଏକ ତାତ୍ତ୍ୱିକ ଗ୍ରନ୍ଥ ପ୍ରକାଶ କରି ସମସ୍ତଙ୍କର ଧନ୍ୟବାଦର ପାତ୍ର ହୋଇଛି । ଇତିପୂର୍ବରୁ ଶକୀଲ ଅହମଦ 'ଇସଲାମ ପରିଚୟ', 'ମହାମାନ୍ୟ ମୁହମ୍ମଦ', 'ଇସଲାମ ଓ ମାନବିକତା', 'ପୁନର୍ଜୀବନ କାହିଁକି', 'ବେଦ, ବାଇବେଲ ଓ କୁରଆନରେ ଏକେଶ୍ୱରବାଦ', 'ମହାମାନ୍ୟ ମୁହମ୍ମଦଙ୍କ ମହତବାଣୀ', 'ଜିହାଦ ଓ ଆତଙ୍କବାଦ' ଇତ୍ୟାଦି କେତେକ ଉଚ୍ଚକୋଟିର ଚିନ୍ତାମୂଳକ ପୁସ୍ତକ ଲେଖି ଓଡ଼ିଶାର ପାଠକମାନଙ୍କ ପାଖରେ ବେଶ୍ ପରିଚିତ ହୋଇପାରିଛନ୍ତି । ଏ ସମସ୍ତ ପୁସ୍ତକ ମୁଁ ପଢିଛି ଓ କେତୋଟିର ମୁଖବନ୍ଧ ଲେଖିଛି ।

ଏବେ 'ବେଦ ଓ କୁରଆନର ବ୍ରହ୍ମତତ୍ତ୍ୱ' ପୁସ୍ତକଟିକୁ ପଢ଼ି ଅତ୍ୟନ୍ତ ବିମୋହିତ ହେଲି । ମୁଁ ଅନୁଭବ କଲି ଶ୍ରୀଯୁକ୍ତ ଶକୀଲ୍ ସତ୍ ଆନ୍ତରିକତାର ସହ ପୃଥିବୀର ତିନୋଟି ବିଶିଷ୍ଟ ଧର୍ମର ବିବିଧ ଗ୍ରନ୍ଥକୁ ଅଧ୍ୟୟନ କରି ଏହି ଧର୍ମତ୍ରୟୀର ମୂଳ ସତ୍ୟକୁ ଆବିଷ୍କାର କରି ଯେପରି ସେମାନଙ୍କ ମଧ୍ୟରେ ଥିବା ସାମ୍ୟଭାବକୁ ଦର୍ଶାଇ ଦେଇ ସଂହତି ଓ ସହାବସ୍ଥାନର ମନ୍ତ୍ର ଉଚ୍ଚାରଣ କରିଛନ୍ତି, ତାହା ନିଶ୍ଚୟ ତାତ୍ପର୍ଯ୍ୟପୂର୍ଣ୍ଣ । କୌଣସି ଗ୍ରନ୍ଥକୁ ଉତ୍ତମ ରୂପେ ଅଧ୍ୟୟନ ନ କରି, ପ୍ରକୃତ ସତ୍ୟକୁ ନ ଜାଣି, ଧର୍ମ ନାମରେ ଯାବତୀୟ ସଂକୀର୍ଣ୍ଣ ଧାରଣା ଓ ଆଚାରଗୁଡ଼ାକୁ ଜାବୁଡ଼ି ଧରି ନିଜ ନିଜ ଧର୍ମକୁ ଏକମାତ୍ର ସତ୍ୟ ବୋଲି କହିବା, ପରସ୍ପର ଭିତରେ ସଂଘର୍ଷଲିପ୍ତ ହେବା ଓ ବିଶ୍ୱଶାନ୍ତିକୁ ପ୍ରତିହତ କରିବାକୁ ସେ ଆଦୌ ପସନ୍ଦ କରିନାହାନ୍ତି । ତେଣୁ ସେ ନୀରବ ଋଷି ପରି ଗ୍ରନ୍ଥ ପରେ ଗ୍ରନ୍ଥ ଲେଖି ଚାଲିଛନ୍ତି ଓ ତାହାରି ମାଧ୍ୟମରେ ଏକ ଈଶ୍ୱରଙ୍କୁ ମାନିନେଇ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ

ସକଳ ମାନବଜାତି ଭିତରେ ସଂହତି ସ୍ଥାପନ ପାଇଁ ଯେପରି ଉଦ୍ୟମ ଜାରି ରଖିଛନ୍ତି, ତାହା ତାଙ୍କର ମାନବ-ସଂପ୍ରୀତିର ପରିଚୟ ଦିଏ ।

ବେଦ, ବାଇବେଲ ଓ କୁରଆନର ବ୍ରହ୍ମତତ୍ତ୍ୱ ସଂପର୍କରେ ତୁଳନାତ୍ମକ ଅଧ୍ୟୟନକୁ ଯେପରି ଭାବରେ ଶ୍ରୀଯୁକ୍ତ ଶକୀଲ ଉପସ୍ଥାପନ କରିଛନ୍ତି, ତାହା କେବଳ ତାଙ୍କର ପାଣ୍ଡିତ୍ୟର ପରିଚୟ ଦିଏ ନାହିଁ, ଦିଏ ମଧ୍ୟ ତାଙ୍କର ସାମାଜିକ ଦାୟିତ୍ୱବୋଧ ଓ ମାନବୀୟ ବ୍ୟକ୍ତିତ୍ୱର ଯଥାର୍ଥ ପରିଚୟ। ନିଜେ ଇସଲାମଧର୍ମୀ ହେଲେ ହେଁ କୌଣସି ଧର୍ମ ପ୍ରତି ଆଦୌ ବିରୋଧାତ୍ମକ ମନୋଭାବ ପ୍ରକାଶ ନ କରି ପ୍ରମୁଖ ତ୍ରିବିଧ ଧର୍ମର ବିବିଧ ପ୍ରାମାଣିକ ଗ୍ରନ୍ଥକୁ ଗଭୀର ଅଭିନିବେଶ ସହକାରେ ଅଧ୍ୟୟନ ଓ ଅନୁଶୀଳନ ପୂର୍ବକ ଈଶ୍ୱରତତ୍ତ୍ୱ ବା ବ୍ରହ୍ମତତ୍ତ୍ୱକୁ ଯେପରି ଭାବରେ ଦର୍ଶାଇ ଦେଇ ସକଳ ଧର୍ମର ଐକ୍ୟ ଓ ସାମ୍ୟକୁ ଉପସ୍ଥାପନ କରିଛନ୍ତି ଓ ସକଳ ସମ୍ପ୍ରଦାୟ ମଧ୍ୟରେ ସଂହତି ଓ ଭ୍ରାତୃତ୍ୱ ବନ୍ଧନ ଉପରେ ଗୁରୁତ୍ୱ ଦେଇଛନ୍ତି, ତାହା ଏକାନ୍ତ ମହତ୍ତ୍ୱପୂର୍ଣ୍ଣ । ବେଦ ବେଦାନ୍ତର ଯିଏ 'ବ୍ରହ୍ମ', ସିଏ କୁରଆନ୍‌ର 'ଅଲ୍ଲାହ' ଓ ବାଇବଲରେ ସିଏ 'ଗଡ୍' । ସେ ଏକ, ଅନେକ ନୁହନ୍ତି । ସିଏ ଅଖଣ୍ଡ, ପୂର୍ଣ୍ଣ । ସେ ଅରୂପ, ନିରାକାର, ସର୍ବବ୍ୟାପୀ, ସର୍ବବିଦ୍ୟମାନ, ସର୍ବଶକ୍ତିମାନ । ସିଏ ସୃଷ୍ଟି, ସ୍ଥିତି ଓ ବିଲୟର କାରଣ । ସିଏ ସର୍ବଲୋକେଶ୍ୱର । ବ୍ରହ୍ମ, ଅଲ୍ଲାହ ଓ ଗଡ୍ ଏକ ଓ ଅଭିନ୍ନ । ସିଏ ଅଜନ୍ମା–'ନ ଜାୟତେ ମ୍ରିୟତେ ବା କଦାଚିତ'। ତେଣୁ ସେ ପିତାମାତାବିହୀନ । ସେ ଅବିନାଶୀ, ଅନାଦି ଓ ଅନନ୍ତ । ସିଏ ମଧ୍ୟ ସର୍ବଦର୍ଶୀ, ଅନ୍ତର୍ଯ୍ୟାମୀ । ସେ ପରମ ଜ୍ୟୋତିରୂପ ଓ ଅମୂର୍ତ୍ତ । ତାଙ୍କୁ କୌଣସି ମୂର୍ତ୍ତି ଭିତରେ ପ୍ରକାଶ କରିହୁଏ ନାହିଁ । ଅଥଚ ବ୍ରହ୍ମବୋଧର ମୂଳ ସୂତ୍ରରୁ ଅପସରି ଆସି ପରବର୍ତ୍ତୀ କାଳରେ ଚତୁରମାନେ ନାନା ଭେଦ ସୃଷ୍ଟି କରିଦେଇଛନ୍ତି, ଯାହା ଧର୍ମ ଧର୍ମ ମଧ୍ୟରେ ସଂଘର୍ଷ ସୃଷ୍ଟି କରିଦେଇଛି । ମୂଳଗ୍ରନ୍ଥ ସମ୍ପର୍କରେ ଅନବହିତ ଅଜ୍ଞମାନେ ନିଜ ନିଜ ଧର୍ମର ବଡ଼ପଣିଆ ଦେଖାଇ ଅନ୍ୟ ଧର୍ମ ପ୍ରତି ଅସୂୟା ପୋଷଣ କରିଛନ୍ତି । ବିଶେଷତଃ ସନାତନ ହିନ୍ଦୁ ଧର୍ମ ଓ ଇସଲାମ ଧର୍ମ ମଧ୍ୟରେ ଚତୁରମାନେ ହିଁ ସଂଘର୍ଷ ଲଗାଇଦେଇ ପୈଶାଚିକ ଉଲ୍ଲାସ ଅନୁଭବ କରୁଛନ୍ତି । ଶ୍ରୀ ଶକୀଲ୍ ହିନ୍ଦୁ ମୁସଲିମ୍ ସମ୍ପର୍କକୁ ଅଧିକ ମଧୁର କରିବା ପାଇଁ ରଚନା କରିଛନ୍ତି ଏହି ପୁସ୍ତକ ଓ ଏହାର ମୁଖବନ୍ଧରେ ସେ କହନ୍ତି–''ଏହି ପୁସ୍ତକଟିରେ ମୁଁ ଇସଲାମର ବ୍ରହ୍ମତତ୍ତ୍ୱର ବ୍ୟାଖ୍ୟା କରିବା ସହିତ ସନାତନ ଧର୍ମ ସହ ଏହାର ତୁଳନାତ୍ମକ ଆଲୋଚନା କରିଛି । ଉଦ୍ଦେଶ୍ୟ ହେଉଛି ପାଠକମାନଙ୍କୁ କେବଳ ଏତିକି ଜଣାଇବା

ଯେ ହିନ୍ଦୁ ଓ ମୁସଲମାନଙ୍କର ଈଶ୍ୱର ଭିନ୍ନ ଭିନ୍ନ ନୁହନ୍ତି । ଯେଉଁ ପରମ ପବିତ୍ର ସତ୍ତାଙ୍କୁ ବେଦ ଓ ବେଦାନ୍ତରେ 'ବ୍ରହ୍ମ' କୁହାଯାଇଛି, ତାଙ୍କୁ ହିଁ କୁରଆନରେ 'ଅଲ୍ଲାହ' କୁହାଯାଇଛି । କେବଳ ଭାଷାର ପ୍ରଭେଦ ।''

ଏହି ମହତ ବିଚାରଧାରା ବିବିଧ ସମ୍ପ୍ରଦାୟର ଲୋକେ ବୁଝିଗଲେ ଜାତି, ଗୋଷ୍ଠୀ ଓ ସମ୍ପ୍ରଦାୟର ବନ୍ଧନରୁ ମୁକ୍ତ ହୋଇ ପ୍ରତ୍ୟେକ ସାରା ବିଶ୍ୱକୁ ଆପଣାର ମନେ କରିବ ଓ ବିଶ୍ୱ ହୋଇଯିବ ମାନବଜାତିର ଗୋଟିଏ କୁଟୁମ୍ବ—'ବସୁଧୈବ କୁଟୁମ୍ବକମ୍'। ଏହା ହେଲେ ଲେଖକଙ୍କ ଭାଷାରେ—''ମନରେ ଅନ୍ୟ ମଣିଷଟି ପାଇଁ ଦରଦ ଓ ଆତ୍ମୀୟତା ଜାତ ହେବ । ଅନ୍ୟର କଲ୍ୟାଣ ପାଇଁ ମନ ବଳିବ । ତେବେ ଯାଇ ଆମେ ବେଦବାଣୀ 'ଭ୍ରାତରଃ ମନୁଜାଃ ସର୍ବେ, ସ୍ୱଦେଶୋ ଭୁବନ ତ୍ରୟମ୍' ବା କୁରଆନ ବାଣୀ 'ଇନ୍ନା ହାଜିହି ଉମ୍ମତୁକୁମ୍ ଉମ୍ମତଓଁ ୱାହିଦା'ର ମହତ୍ତ୍ୱ ଉପଲବ୍ଧି କରିପାରିବା ।'' ଏହି ବିଚାରଧାରାକୁ କେନ୍ଦ୍ର କରି ଶ୍ରୀଯୁକ୍ତ ଶକୀଲ୍ ଏହି ପୁସ୍ତକଟିକୁ ରଚନା କରି ତାଙ୍କର ସାମାଜିକ ଓ ଜାତୀୟ ଦାୟିତ୍ୱବୋଧର ପରିଚୟ ଦେଇଛନ୍ତି ।

ଲେଖକ ଈଶ୍ୱର ବା ବ୍ରହ୍ମଙ୍କ ଅସ୍ତିତ୍ୱକୁ ସ୍ୱୀକାର କରିଛନ୍ତି । ଯେଉଁମାନେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରନ୍ତି, ସେମାନଙ୍କୁ ସେ କହନ୍ତି ଯେ ସଂସାରରେ ଅନେକ ବସ୍ତୁ ଦେଖା ନଗଲେ ମଧ୍ୟ ସେଗୁଡ଼ିକୁ ଆମେ ସ୍ୱୀକାର କରୁ, ଯେମିତି ଆତ୍ମା, ବିଦ୍ୟୁତ ଇତ୍ୟାଦି । ସେ ଆହୁରି ଆନେକ ଦୃଷ୍ଟାନ୍ତ ଦେଇ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣିତ କରିଛନ୍ତି, ମାତ୍ର ଈଶ୍ୱର ଯେ ଅମୂର୍ତ୍ତ, ନିରାକାର—ଏହାରି ଉପରେ ଗୁରୁତ୍ୱ ଦେଇ ବିଭିନ୍ନ ଧର୍ମଶାସ୍ତ୍ରରୁ ଉଦାହରଣ ଦେଇ ବୁଝାଇ ଦେଇଛନ୍ତି । ବେଦ, ବେଦାନ୍ତ, ବାଇବେଲ, କୁରଆନ ଆଦି ବିଭିନ୍ନ ଗ୍ରନ୍ଥରୁ ଦୃଷ୍ଟାନ୍ତ ଦେଇ ଯେପରି ଈଶ୍ୱରଙ୍କୁ ଏକ, ଅରୂପ ଓ ନିରାକାର ରୂପେ ପ୍ରତିପାଦନ କରିଛନ୍ତି, ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରକୃତରେ ପରବର୍ତ୍ତୀ କାଳରେ ଏକ ଈଶ୍ୱରଙ୍କୁ ବିବିଧ ନାମରେ ନାମିତ କରାଯାଇଛି ଓ ବିବିଧ ରୂପରେ ମଧ୍ୟ ନିର୍ମାଣ କରାଯାଇଛି । ଏହା ପ୍ରକୃତ ଧର୍ମମାର୍ଗ ନୁହେଁ । ଏହାଦ୍ୱାରା ବିଭିନ୍ନ ଧର୍ମ ମଧ୍ୟରେ ସଂଘର୍ଷ ଦେଖାଦେଇଛି । ଯଦି ସମସ୍ତେ ଏକ ଈଶ୍ୱରଙ୍କୁ ମାନି ନିଅନ୍ତେ, ତାଙ୍କ ପ୍ରଦର୍ଶିତ ମାର୍ଗ ଅନୁସାରେ ଜୀବନ ବିତାନ୍ତେ, ତେବେ ଧର୍ମକୁ ନେଇ ଆଉ ସଂଘର୍ଷ ହୁଅନ୍ତା କି ? ଏହାହିଁ ହେଉଛି ଶ୍ରୀଯୁକ୍ତ ଶକୀଲଙ୍କ ଅଭିଳାଷ । ତେଣୁ ସେ ଯେପରି ବେଦ, ବେଦାନ୍ତ,

କୁରଆନ ଓ ବାଇବଲକୁ ଆଧାର କରି ବ୍ରହ୍ମତତ୍ତ୍ୱ ସମ୍ପର୍କରେ ବିଚାର-ବିମର୍ଶ କରିଛନ୍ତି ଓ ଧର୍ମ ନାମରେ ଯାବତୀୟ ସଂକୀର୍ଣ୍ଣତା ଓ ମତାନ୍ଧତାକୁ ଲୋପ କରି ଏକ ଈଶ୍ୱର ଭାବନାରେ ଉଦ୍‌ବୁଦ୍ଧ ହୋଇ ସମସ୍ତଙ୍କୁ ଆପଣାର ମନେ କରିବାକୁ ପ୍ରେରଣା ଦେଇଛନ୍ତି, ବାସ୍ତବିକ ତାହା ତାଙ୍କର ଗଭୀର ନିଷ୍ଠା ଓ ଜାତୀୟ ସଂହତି ପାଇଁ ମହତ ଆକାଂକ୍ଷାର ପରିଚୟ ଦିଏ । ଏହି ଗ୍ରନ୍ଥଟି ଏକ ଚମତ୍କାର ଗ୍ରନ୍ଥ । ଏହି ଗ୍ରନ୍ଥଟିକୁ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ ତଥା ଅନ୍ୟ ଧର୍ମାବଲମ୍ବୀମାନେ ଅଧ୍ୟୟନ କରିବା ଉଚିତ ବୋଲି ମୁଁ ଆଶା ପୋଷଣ କରୁଛି । ଏହା ପାଠକୀୟ ଶ୍ରଦ୍ଧା ଲାଭ କରୁ—ଏହା ମୋର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

(ଡ଼ଃ ବୈଷ୍ଣବ ଚରଣ ସାମଲ)

ଡ଼ଃ ବିକାଶ ଚନ୍ଦ୍ର ପଣ୍ଡା
ପ୍ରଫେସର, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

ସମଗ୍ର ବିଶ୍ୱରେ ଈଶ୍ୱର ପ୍ରତୀତିକୁ ନେଇ ଆସ୍ତିକବାଦ, ନିରୀଶ୍ୱରବାଦ, ସଂଶୟବାଦ, ଅଜ୍ଞେୟବାଦ ଆଦି ପୃଥକ ପୃଥକ ଦୃଷ୍ଟିଭଙ୍ଗୀ ଦେଖିବାକୁ ମିଳିଥାଏ । ଆସ୍ତିକବାଦ ମଧ୍ୟ ବିଭିନ୍ନ ବିଶ୍ୱାସ ଉପରେ ପ୍ରତିଷ୍ଠିତ । ଏକୋକାଧ୍ୱ ଈଶ୍ୱରବାଦ (Henotheism), ବହୁଈଶ୍ୱରବାଦ (Polytheism) ଓ ଏକେଶ୍ୱରବାଦ (Monotheism) । ସୃଷ୍ଟିର ଆରମ୍ଭରୁ ସାଂପ୍ରତିକ ସମୟରେ ଈଶ୍ୱରଙ୍କ ବିଷୟରେ ନାନା ମତ ଓ ସିଦ୍ଧାନ୍ତ ମାନବ ସମାଜରେ ପ୍ରଚଳିତ ଅଛି ।

ଜଡ଼ବାଦୀମାନେ କହନ୍ତି ଯେ, ଈଶ୍ୱର ଧାରଣା ମନୁଷ୍ୟର ଭୟ ଓ ଅଜ୍ଞାନତାରୁ ଜନ୍ମ । ଜଡ଼ବାଦରେ ପ୍ରକୃତି ବାହାରେ ଅତିପ୍ରାକୃତିକ ବୋଲି କିଛି ନାହିଁ । ବ୍ୟକ୍ତ ବାହାରେ ଅବ୍ୟକ୍ତ ବୋଲି କିଛି ନାହିଁ । ଜଡ଼ବାଦୀ କହିଦିଏ ଈଶ୍ୱର ନାହାନ୍ତି । ଈଶ୍ୱର ଅଛନ୍ତି କି ନାହାନ୍ତି, ଏ ବିଷୟରେ ବିଜ୍ଞାନୀ କିଛି କହେ ନାହିଁ । ସୁତରାଂ ବିଜ୍ଞାନୀ ଭଗବାନଙ୍କର ଅସ୍ତିତ୍ୱ ନାସ୍ତିତ୍ୱ ବିଷୟରେ ନୀରବ ।

ଈଶ୍ୱରଙ୍କ ସମ୍ବନ୍ଧରେ ପ୍ରତ୍ୟେକ ବ୍ୟକ୍ତିର ଜିଜ୍ଞାସା ରହିବା ଉଚିତ । ତାଙ୍କର ବାସ୍ତବିକ ସ୍ୱରୂପ କ'ଣ, ଏହା ଜାଣିବା ମନୁଷ୍ୟ ପକ୍ଷରେ ସ୍ୱାଭାବିକ । ସେହି ବିଷୟରେ ଆମର ଶାବ୍ଦିକ ଜ୍ଞାନ ରହିଛି, ପରନ୍ତୁ ତାତ୍ତ୍ୱିକ ଜ୍ଞାନ ସ୍ୱଳ୍ପ ଅଟେ । ତାଙ୍କର ସ୍ୱରୂପ ଅନେକଙ୍କ ମତରେ ଅନେକ । ଈଶ୍ୱର ଅଛନ୍ତି ନା ନାହାନ୍ତି, ଯଦିବା ଅଛନ୍ତି, ତେବେ କିପରି ଓ କେଉଁଠି ଅଛନ୍ତି, ଈଶ୍ୱର ଏକ ନା ଅନେକ, ସାକାର ନା ନିରାକାର, ତାଙ୍କର ନାମ କ'ଣ ? ସେ ଖାଆନ୍ତି କି ନାହିଁ ? ସେ ପିଅନ୍ତି କି ନାହିଁ ? ସେ ଶୁଅନ୍ତି କି ନାହିଁ ? ସେ ପ୍ରସନ୍ନ ବା ବିଷର୍ଣ୍ଣ ହୁଅନ୍ତି କି ? ଏମିତି ଅନେକ ପ୍ରଶ୍ନ ମନକୁ ଆନ୍ଦୋଳିତ କରେ । ଏହି ସଂଶୟଗୁଡ଼ିକର ନିରାକରଣ କରିବା ନିତାନ୍ତ ଆବଶ୍ୟକ।

ବିଶିଷ୍ଟ ବିଦ୍ୱାନ ଓ ଗବେଷକ ଶ୍ରୀଯୁକ୍ତ ଶକୀଲ ଅହମଦଙ୍କ ଦ୍ୱାରା ରଚିତ "ବେଦ ଓ କୁରଆନ୍‌ର ବ୍ରହ୍ମତତ୍ତ୍ୱ" ଏକ ଉଚ୍ଚକୋଟିର ଗବେଷଣାଧର୍ମୀ ଗ୍ରନ୍ଥ । ସନାତନ ହିନ୍ଦୁ ଧର୍ମର ପବିତ୍ର ଗ୍ରନ୍ଥ ବେଦ ଓ ଇସଲାମ ଧର୍ମର ପବିତ୍ର ଗ୍ରନ୍ଥ

କୁରଆନ୍‌ର ଏକ ତୁଳନାତ୍ମକ ଅଧ୍ୟୟନ କରି ଶ୍ରୀଯୁକ୍ତ ଅହମଦ୍ ଉଭୟ ଶାସ୍ତ୍ରରେ ଥିବା ବ୍ରହ୍ମତତ୍ତ୍ୱର ସମାନତାକୁ ଅତି ସରଳ, ସାବଲୀଳ ତଥା ବୋଧଗମ୍ୟ ଭାବରେ ଉପସ୍ଥାପିତ କରିଅଛନ୍ତି ।

ବିଶ୍ୱର ବିଭିନ୍ନ ଧାର୍ମିକ ମତବାଦର ମାର୍ଗ ଭିନ୍ନ ଭିନ୍ନ, ମାତ୍ର ଲକ୍ଷ ଏକ । ଧର୍ମ ଈଶ୍ୱର ପ୍ରଦତ୍ତ ଜୀବନ-ମାର୍ଗ । ବିଭିନ୍ନ ସମୟରେ ବିଶ୍ୱର ବିଭିନ୍ନ ସ୍ଥାନରେ ଜନ୍ମ ଲାଭ କରିଥିବା ଧର୍ମପ୍ରଚାରକମାନେ ସମାନ କଥା ପ୍ରଚାର କରିଅଛନ୍ତି । ଈଶ୍ୱର ପ୍ରଦତ୍ତ ସମସ୍ତ ଶାସ୍ତ୍ରର ସିଦ୍ଧାନ୍ତ ଓ ମୌଳିକ ଶିକ୍ଷା ସମାନ । କାରଣ ଧର୍ମର ମୌଳିକ ସିଦ୍ଧାନ୍ତ ପରିବର୍ତ୍ତନଶୀଳ ନୁହେଁ । ବିଶ୍ୱର ସମସ୍ତ ଧର୍ମ ଉଦ୍‌ଘୋଷଣା କରେ—ଈଶ୍ୱର ଏକ, ଅନେକ ନୁହନ୍ତି । ସନାତନ ବୈଦିକ ଧର୍ମ କହେ— ''ଏକୋ ବ୍ରହ୍ମ ଦ୍ୱିତୀୟୋ ନାସ୍ତି'', ''ବ୍ରହ୍ମ ଏକଃ ଅଦ୍ୱିତୀୟଃ'' । ଏହାର ଆରବୀ ରୂପାନ୍ତର ''ଲା ଇଲାହ୍ ଇଲ୍ଲ-ଲ୍ଲାହ୍''। ଏହି ଏକେଶ୍ୱରବାଦର ସିଦ୍ଧାନ୍ତ ସମସ୍ତ ଧର୍ମରେ ସମାନ ।

ବେଦ ଓ କୁରଆନ୍‌ର ବ୍ରହ୍ମ ଭିନ୍ନ ଭିନ୍ନ ନୁହନ୍ତି । ଯେଉଁ ପରମ ପବିତ୍ର ସତ୍ତାଙ୍କୁ ବେଦ ଓ ବେଦାନ୍ତରେ ବ୍ରହ୍ମ କୁହାଯାଇଛି, ତାଙ୍କୁ ହିଁ କୁରଆନରେ ଅଲ୍ଲାହ୍ କୁହାଯାଇଛି । କେବଳ ଭାଷାଗତ ପ୍ରଭେଦ ରହିଛି । ଶ୍ରୀଯୁକ୍ତ ଅହମଦ୍ ବିଭିନ୍ନ ଶାସ୍ତ୍ରରୁ ବ୍ରହ୍ମତତ୍ତ୍ୱ ସମ୍ପର୍କରେ ଅନେକ ବଳିଷ୍ଠ ପ୍ରାମାଣିକ ତଥ୍ୟକୁ ଉଦ୍ଧାର କରି ବେଦ ଓ କୁରଆନର ବର୍ଣ୍ଣିତ ବ୍ରହ୍ମତତ୍ତ୍ୱ ସମ୍ପର୍କିତ ସାମଞ୍ଜସ୍ୟର ପ୍ରମାଣ ଦେଇ ନିଜର ବହୁଶାସ୍ତ୍ରଦର୍ଶିତାର ପରିଚୟ ପ୍ରଦାନ କରିଅଛନ୍ତି । ଈଶ୍ୱରଙ୍କର ଗୁଣ, କର୍ମ ଓ ସ୍ୱଭାବ ସମ୍ପର୍କରେ ଆଲୋଚ୍ୟ ପୁସ୍ତକରେ ବହୁ ତୁଳନାତ୍ମକ ତଥ୍ୟର ଅବତାରଣା, ନିଶ୍ଚିନ୍ତଭାବେ ପାଠକମାନଙ୍କ ନିମନ୍ତେ ନୂତନ ଆଲୋକର ସନ୍ଧାନ ଦେଇପାରିବ । ଆଶା କରୁଛି, ପୁସ୍ତକଟି ପାଠକୀୟ ଆଦୃତି ଲାଭ କରିବା ସଙ୍ଗେ ସଙ୍ଗେ ସାଧାରଣ ମଣିଷର ଭ୍ରାନ୍ତ ଧାରଣାକୁ ଦୂର କରିପାରିବ । ବାସ୍ତବିକ ବିଶିଷ୍ଟ ସାରସ୍ୱତ ସାଧକ, ଗବେଷକ ଶ୍ରୀଯୁକ୍ତ ଶକୀଲ ଅହମଦଙ୍କର ଉଦ୍ୟମ ପ୍ରଶଂସନୀୟ ।

ଡ଼ଃ ବିକାଶ ଚନ୍ଦ୍ର ପଣ୍ଡା

**ଡକ୍ଟର କାଳୀପ୍ରସନ୍ନ ଶତପଥୀ**
ସଂସ୍କୃତ ଶିକ୍ଷା ବିଶାରଦ
ଲୋକକବି, ବିଦ୍ୟାଭୂଷଣ, ପୁରାଣ ବାଚସ୍ପତି
ଉପାଧ୍ୟକ୍ଷ, ଦିବ୍ୟସ୍ୱରୂପ ଦିବ୍ୟଜୀବନ ଆଧ୍ୟାତ୍ମବିକାଶ ଆଶ୍ରମ, କେନ୍ଦ୍ରାପଡ଼ା
'ବ୍ରହ୍ମବୈବର୍ତ୍ତନମ୍' ଗ୍ରନ୍ଥ ରଚୟିତା

ସମ୍ମାନୟାମ୍ୟହଂ ସର୍ବାନ୍ ଧର୍ମାନ୍ ସର୍ବାନ୍ ମହାତ୍ମନଃ
ସର୍ବେଷାଂ ମଙ୍ଗଳାର୍ଥାୟ ମାର୍ଗ ବିଶ୍ୱସମେବ ଚ ॥

ମୁଁ ସମସ୍ତ ଧର୍ମ, ସମସ୍ତ ମହାତ୍ମା, ସମସ୍ତଙ୍କ ମଙ୍ଗଳ ପାଇଁ ଉଦ୍ଦିଷ୍ଟ ମତବାଦ ଓ ଈଶ୍ୱରବିଶ୍ୱାସକୁ ସ୍ୱୀକାର କରି ସମ୍ମାନ ଜଣାଉଛି । ସର୍ବଶକ୍ତି ସମନ୍ୱିତ, ସର୍ବଜ୍ଞ, ମୁକ୍ତ ସ୍ୱଭାବ, ଶୁଦ୍ଧ ବୁଦ୍ଧ, ନିତ୍ୟ, ନିର୍ଗୁଣ, ନିରାକାର ତଥା ସର୍ବବ୍ୟାପକ ବ୍ରହ୍ମଙ୍କ ସ୍ୱରୂପ ଅବାଙ୍ମାନସଗୋଚର ହେତୁ ବଚନ ଓ ମନରେ ପ୍ରକାଶ କରିହୁଏ ନାହିଁ । କେବଳ ନିର୍ମଳ ହୃଦୟରେ ତାଙ୍କୁ ଗଭୀର ବିଶ୍ୱାସ ସହିତ ଅନୁଭବ କରାଯାଇପାରେ । ଆରବୀ ଭାଷାରେ 'ବ୍ରହ୍ମ' ଅର୍ଥବୋଧକ 'ଅଲ୍ଲାହ୍' ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ । ସବୁଠାରୁ ଚମତ୍କାର କଥା ଯେ ସଂସ୍କୃତ ବ୍ୟାକରଣ ଓ ଅଭିଧାନରେ 'ଅଲ୍ଲାହ୍' ଶବ୍ଦର ସ୍ପଷ୍ଟ ଉଲ୍ଲେଖ ରହିଛି; ଯାହାର ଅର୍ଥ ସଂସାରକୁ ଅଳଂକୃତ କରିବା, ପାଳନ କରିବା, ଗ୍ରହଣ କରିବା, ଗ୍ରାସ କରିବା ଏବଂ ସର୍ବତୋଭାବେ ଜାଣିବା କ୍ଷମତା ଥିବା ଅତୁଳନୀୟ ସୃଷ୍ଟିକାରିଣୀ ମହାଶକ୍ତି ପରମାତ୍ମାଙ୍କୁ ହିଁ ବୁଝାଏ । (ଅଲ୍ଲା - ଅଲ୍ୟତେ ଇତି ଅଲ୍+ଲା+କ) (ଶବ୍ଦସ୍ତୋମ ମହାନିଧିଃ, ପୃଷ୍ଠା-୪୮, ପାଣିନି ବ୍ୟାକରଣ VII.3.107. The Practical Sanskrit English Dicitionary By V.S. Apte. Page-158 ଦ୍ରଷ୍ଟବ୍ୟ) ଅହ ଶବ୍ଦ ଅବ୍ୟୟ, ସ୍ତୁତି ଓ ଦୃଢ଼ସଂକଳ୍ପ ଅର୍ଥରେ ଏବଂ ଆହ ଶବ୍ଦ ଅବ୍ୟୟ ପୁନଶ୍ଚ କ୍ରିୟା ରୂପରେ ଆଜ୍ଞା ବା ଉପଦେଶବାଣୀ ଅର୍ଥରେ ବ୍ୟବହୃତ ହୁଏ । ତେଣୁ ଅଲ୍ଲା+ଅହ = ଅଲ୍ଲାହ୍ ଅର୍ଥ ପରମାତ୍ମା ହିଁ ଇଚ୍ଛାମୟ, ଏକମାତ୍ର ତାଙ୍କରି ଇଚ୍ଛା ହିଁ କାର୍ଯ୍ୟକାରୀ ହୁଏ, ତେଣୁ ସେହିଁ ସର୍ବମାନ୍ୟ ଉପାସ୍ୟ।

ଶ୍ରୀଯୁକ୍ତ ଶକୀଲ ଅହମଦଙ୍କ ଲିଖିତ 'ବେଦ ଓ କୁରଆନର ବ୍ରହ୍ମତତ୍ତ୍ୱ' ପୁସ୍ତକର ପାଣ୍ଡୁଲିପି ପଢି ଅତ୍ୟନ୍ତ ଅଭିଭୂତ ହେଲି । ସତ୍ୟାନୁସନ୍ଧାନବ୍ରତୀ

ସଂସ୍କାରପ୍ରେମୀ ଗବେଷକ, ଲେଖକ ମହୋଦୟ କେବଳ ଆଧ୍ୟାତ୍ମିକ ଧାର୍ମିକ ସମନ୍ୱୟ ପ୍ରତିଷ୍ଠା ପାଇଁ ଲେଖନୀ ଚାଳନା କରିନାହାନ୍ତି, ବରଂ ବାସ୍ତବିକ ସମାଜର ହିତ ସାଧନ କରୁଥିବା ଯଥାର୍ଥ ସାହିତ୍ୟ ଗ୍ରନ୍ଥଟିଏ ଈଶ୍ୱରବିଶ୍ୱାସୀ ତଥା ଜିଜ୍ଞାସୁ ପାଠକମାନଙ୍କୁ ଉପହାର ଦେଇଛନ୍ତି । ସାଧାରଣ ମାନବ ଅଜ୍ଞତା ଓ ଅଳ୍ପଜ୍ଞତା ହେତୁ ଏକମାତ୍ର ସର୍ବପୂଜ୍ୟ ସର୍ବଜ୍ଞ ପରମାତ୍ମା ବ୍ରହ୍ମସ୍ୱରୂପ ଅଲ୍ଲାହ୍ ଏବଂ ଚିରନ୍ତନ ମାନବଧର୍ମର ରହସ୍ୟ ଓ ସତ୍ୟତାକୁ ବୁଝି ନପାରି ବିଭିନ୍ନ ମତ ସମ୍ପ୍ରଦାୟ ନିର୍ଦ୍ଧାରିତ ଉପାସନା ମାର୍ଗକୁ ନିଜ ବିଚାର ଦୃଷ୍ଟିରେ ବିବେଚନା କରି ଭ୍ରମରେ ପଡ଼ିଥାଏ । ଫଳରେ ମାନସିକ ଦ୍ୱନ୍ଦ ଓ ସଂଘର୍ଷ ଯୋଗୁଁ ପ୍ରକୃତ ମାର୍ଗରୁ ବିଚ୍ୟୁତ ହୋଇ ଶାନ୍ତି, ସନ୍ତୋଷ ଏବଂ ମୁକ୍ତିଲାଭରୁ ବଞ୍ଚିତ ହୁଏ । କାଳର କୁଟିଳ ଗତିରେ ଭୌଗୋଳିକ ଓ ସାମାଜିକ ପରିବେଶ ଏବଂ ଭାଷାଗତ ପରିବର୍ତ୍ତନ ଯୋଗୁଁ ବ୍ୟକ୍ତିବାଦର ପ୍ରଭାବରେ ସରଳବିଶ୍ୱାସୀ ମାନବ ହୃଦୟରେ ବହୁଦେବତା-ଗୁରୁ-ମତବାଦ ଓ ସାମ୍ପ୍ରଦାୟିକ ବୈଷମ୍ୟର ବିଷ ସଞ୍ଚରିତ ହୋଇ ସମାଜରେ ଘୃଣା ତଥା ଅବିଶ୍ୱାସର ବାତାବରଣ ସୃଷ୍ଟି ହୋଇଛି । ଏକମାତ୍ର ପରମପୂଜ୍ୟ ସୃଷ୍ଟିକର୍ତ୍ତା ଈଶ୍ୱରଙ୍କର ଆମେ ସନ୍ତାନ, ତାଙ୍କୁ ବିଭିନ୍ନ ନାମରେ ଆମେ ସମ୍ବୋଧନ କରି ଉପାସନା କରୁ, ତାଙ୍କଠାରେ ହିଁ ଶରଣାପନ୍ନ ହୋଇ ନିଜକୁ ସମର୍ପଣ କରୁ, ତାଙ୍କ ନିର୍ଦ୍ଦେଶରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସହିତ ଦିବ୍ୟଜୀବନଯାପନ ପାଇଁ ପ୍ରେରଣା ପାଉ—ଏହି ସତ୍ୟକୁ ଜାଗ୍ରତ କରିବା ଉଦ୍ଦେଶ୍ୟରେ ବିଜ୍ଞ ଲେଖକ ମହୋଦୟ ବେଦ, କୁରଆନ ଏବଂ ବାଇବଲର ଦୃଷ୍ଟାନ୍ତମୂଳକ ତଥ୍ୟ ସମ୍ବଳିତ ତତ୍ତ୍ୱ ଉପସ୍ଥାପନ କରିଛନ୍ତି । ବସୁଧୈବ କୁଟୁମ୍ବକମ୍ ତଥା ସର୍ବଧର୍ମ ସମାନତା (ଧର୍ମନିରପେକ୍ଷତା ନୁହେଁ)ର ଆଦର୍ଶ ବାର୍ତ୍ତାବହ ରୂପେ ସେ ମହାଶୟ କୀର୍ତ୍ତିମାନ ହୋଇ ରହିବେ । ଅଧାର୍ମିକ ଅନ୍ଧବିଶ୍ୱାସରୁ ମୁକ୍ତ ପ୍ରକୃତ ସତ୍ୟପଥରେ ଯାତ୍ରୀ ହେବାପାଇଁ ତାଙ୍କ ବଳିଷ୍ଠ ଲେଖନୀର ନିର୍ଭୀକ ଆହ୍ୱାନ ନିଶ୍ଚୟ ସୁଧୀସମାଜର ଆଦରଣୀୟ ଏବଂ ସ୍ପୃହଣୀୟ ହେବ ବୋଲି ମୋର ଦୃଢ଼ ବିଶ୍ୱାସ । ପୁସ୍ତକ ପ୍ରଣେତା ଶ୍ରୀଯୁକ୍ତ ଶକୀଲ ଅହମଦଙ୍କର ଉଦାର ମହନୀୟ ବ୍ୟକ୍ତିତ୍ୱକୁ ମୁଁ ବିନମ୍ର କୃତଜ୍ଞତା, ଆନ୍ତରିକ ସାଧୁବାଦ ଏବଂ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

କାଳୀପ୍ରସନ୍ନ ଶତପଥୀ

(ଡକ୍ଟର କାଳୀପ୍ରସନ୍ନ ଶତପଥୀ)

**Prof. M.Q. Khan,** D.Litt.
Former Vice Chancellor, Berhampur University
Emeritus Professor of English, Revenshaw University
President, All Odisha Association for English Studies

It is extremely difficult to comprehend and understand the essence and true spirit of every religion by everyone as much as it is difficult to know and realize the true concept and nature of God that different religions project through their theological doctrines. But an objective and correct metaphysical and philosophical analysis will reveal that despite all the difference in various religions, the concept, the essence and spirit of God is one and same. It is universal, all pervasive, omnipotent, omnipresent, omniscient and cosmic having equal and common appeal to, and effect on the minds, hearts and souls of all those who seek Him and realize Him. Hence, the great seers have said 'Seek and ye shall find God within thyself' and God has said that He is closer than the vital blood vein of man.

Mr. Shakeel Ahmed Saheb, who has made himself known by his several books on Islam and Comparative Religion in Odia language, devotes himself to project God and His Essence in the Veda and the Holy Quran, the two great scriptures of two important religions of the world. A distinguished writer in Odia on religion as he is, he makes a vivid and critical discussion on the two in order to show that despite all differences in culture, race, milieu, people and place, the essence and spirit of God is universal, common and same having a cosmic and unlimited shower of His Grace and benevolence on mankind. After reading the present book '*Veda O Quran-ra Brahmatatwa*' one comes closer to understand different religions and the omniscience and omnipresence of God in the entire creation.

While congratulating Shakeel Ahmed Saheb for writing an excellent treatise on a very difficult subject, I recommend the book to all those who truly love to know God and His eternal love and Blessing for mankind.

(Dr. M.Q. Khan)

مولانا سید منظور احمد قاسمی

**Prof. Maulana S.M.A. Quasmi**
M.A., Pol.Sc. M.A.,Urdu (AMU), O.E.S (R)
Former HOD, Urdu & Persian, Revenshaw College
Former Special Officer, Governor of Odisha
Member, All India Muslim Personal Law Board

We human beings are a single family and our Creator & Master is One. This eternal truth has been taught in all the Divine Scriptures. Today, the world has become a Global Village. Socio-economic, political, educational and cultural integration have become the need of the day. Due to little knowledge or lack of knowledge, many people do not understand each and every religion explicitly. Islam is not an exception.

Iqra Research Academy has been striving to clarify Islam and promote Peace and harmony. Mr. Shakeel Ahmed, the Chief Researcher of Iqra Research Academy, has authored many valuable books on Islam to create a proper understanding of the religion and to develop fraternity and brotherhood among different communities. In the present book *'Veda O Quran-ra Brahmatatwa'* the author has made a critical analysis of an important concept of Islam commonly found in the major world scriptures. He has discussed the doctrine of Monotheism found in the Vedas, Upanishads, the Bible and the Quran and has discovered much of the affinities and similarities that are usually hidden from the common eyes.

I am extremely delighted to have gone through the book and deeply admire Mr. Ahmed for his immense effort in producing such a valuable book. The book is very essential in bringing the people of different communities closer to each other. I hope, this book will satisfy the intellectual cravings of those readers who have a genuine desire to know God in the light of the major world scriptures.

(Prof. S.M.A. Quasmi)

مفتی عبدالرحمٰن ندوی

سی۔ای۔و۔ اِقراء ریسرچ اکادمی، کٹک

Mufti Abdur Rahman Nadvi, CEO, IQRA

بسم الله الرحمن الرحيم

اللہ کے رسول حضرت محمد ﷺ سارے عالم کے لیے نبی بنا کر بھیجے گئے ہیں اور ان پر اتاری گئی کتاب قرآنِ مجید دنیا کے تمام انسانوں کی ہدایت اور رہنمائی کے لیے ہے۔ آج دنیا میں کروڑوں انسان ایسے ہیں جو اپنی لاعلمی یا کم علمی کی وجہ سے اس حقیقت سے ناواقف ہیں۔ وہ یہ بھی نہیں جانتے کہ حضرت محمد ﷺ خدا کے رسول ہیں اور قرآن ان کے مالک کا کلام ہے۔ مختلف زمانے میں، مختلف ملکوں میں انبیاء کرام علیہم الصلاۃ والسلام نے اپنی قوموں کو انہی کی زبان میں اللہ کا پیغام پہنچایا ہے۔ اللہ کے بندوں کو اللہ سے ملانا اور پیغام رسالت دنیا کے تمام لوگوں تک پہنچانا امت کی اہم ترین ذمہ داری ہے۔ یہ ایک مبارک کام ہے۔ اللہ کا فضل وکرم ہے کہ کچھ سالوں سے اِقراء ریسرچ اکادمی اڈیہ زبان میں اسلام کا تعاروف کرا رہا ہے اور لوگوں کی غلط فہمیوں کو دور کرنے کی کوشش کر رہا ہے۔ ہزاروں غیر مسلم بھائی بہن ہماری کتابوں سے متاثر ہوے ہیں اور اپنے قلمی اور دلی تاثرات کا اظہار کیا ہے۔

اللہ کے دین کا پہلا اور بنیادی اصول توحید ہے۔ اللہ تبارک وتعالیٰ اپنی ذات و صفات میں اکیلا ہے۔ اس کا کوئی شریک نہیں۔ وہی سب کا خالق، مالک اور معبود برحق ہے۔ اس بات کی تعلیم تمام آسمانی کتابوں میں دی گئی تھی۔ مگر لوگوں نے اللہ کی کتابوں میں تحریف کر ڈالی۔ آج قرآن کے علاوہ دنیا میں کوئی بھی آسمانی کتاب تحریف سے پاک نہیں ہے۔ شکیل بھائی نے بڑی محنت سے 'ویـد اور قـرآن میں خدا کی حقیقت' نام کی یہ کتاب لکھی ہے۔ یہ کتاب ایک تقابلی مطالعہ ہے جس میں مصنف نے آسان اڈیا زبان میں توحید کی حقیقت کو مدلل سمجھایا ہے۔ مختلف مذہب کے لوگوں کو سمجھانے کے لیے وید، اوپنشد، مہابھارت، گیتا، بائبل جیسی مشہور کتابوں سے حوالے دیے ہیں اور سادے اور دلکش انداز میں اللہ تعالیٰ کا تعارف کرایا ہے۔ اِقراء ریسرچ اکادمی کے علماے کرام اور مُفتیانِ عظام نے اس کتاب کو بغور دیکھا ہے اور اس کی طباعت کی اجازت دے دی ہے۔ یہ کتاب ہر مذہب کے لوگوں کے لیے بے حد مفید ہے اور خاص کر کے غیر مسلم بھائیوں کے لیے یہ شانتی اور بھائی چارگی کا پیغام ہے۔ میں دعا کرتا ہوں کہ اللہ تعالیٰ کتاب کے مصنف کو اور اس کی نشر و اشاعت میں تعاون کرنے والے سبھی حضرات کو جزاے خیر عطا فرماے۔ آمین۔

مفتی عبدالرحمٰن ندوی

مفتی عبدالرحمٰن ندوی

MOBILE - 9437014713
9437228680

صوبہ اڑیسہ کی ۲۹ سالہ علیم وقدیم دینی، تعلیمی تبلیغی اور مرکزی درسگاہ

الجامعۃ الاسلامیہ
مرکز العلوم سونگڑہ
ڈاکخانہ کوڈ، ضلع کٹک
صوبہ اڑیسہ ۷۵۴۲۲۱

CODE - 0671 PHONE - 2350406

JAMIA ISLAMIA
MARKAZUL-ULOOM, SUNGRA

PO: KOOD, DIST: CUTTACK
ORISSA ( INDIA), PIN-754221.

مولانا مفتی وقاری سید نقیب الامین برقی قاسمی

مہتمم جامعہ مرکز العلوم سونگڑہ

جنرل سکریٹری جمیعۃ علماء اڑیسہ

بسم الله الرحمن الرحیم

اللہ رب العزت جس کے ساتھ خیر اور بھلائی کا ارادہ فرماتے ہیں تو اس کو دینی سمجھ، دینی شعور، دینی افکار و خیالات عطا فرماتے ہیں اور پھر اسکو کسی نہ کسی طرح سے دینی خدمات کے لیے منتخب فرمالیتے ہیں۔ انہیں سعادت مند اور روشن نصیب لوگوں میں میرے انتہائی عزیز جناب شکیل بھائی صاحب ہیں جو انتہائی عرق ریزی، محنت ولگن اور شوق و ذوق کے ساتھ اپنی تصنیفات و تالیفات کے ذریعہ دین اسلام کی اشاعت کا کام انتہائی محقق اور مدلل انداز میں انجام دے رہے ہیں۔ موصوف اس سے قبل بھی اپنی کئی کتب کے توسط سے اسلامی نظریات کی حقانیت کو دلائل وشواہد کے ذریعہ ثابت کر کے تعلیم یافتہ طبقے کو متأثر کیا ہے۔

زیرنظر کتاب 'وید اور قرآن میں خدا کی حقیقت' میں توحید باری تعالیٰ کے تعلق سے انتہائی معقول دلائل پیش کر کے اغیار کو یہ سمجھانے کی ایک کامیاب کوشش کی ہے کہ توحید باری تعالی سے متعلق قرآان مجید کی تعلیم ہی صحیح، سچ اور حق ہے۔ دعا ہے کہ اللہ رب الاعزت موصوف کی ان مساعیٔ جمیلہ کو شرف قبولیت سے سرفراز فرمایے اور اس کتاب کی نشر واشاعت میں تعاون کرنے والے سبھی حضرات کو جزایے خیر عطا فرمایے۔ والسلام

سید نقیب الامین برقی قاسمی غفرلہ

(سید نقیب الامین برقی قاسمی غفرلہ)

# ସୂଚୀପତ୍ର





# ଭଗବତ୍ ବିଶ୍ୱାସ

ଭଗବତ୍ ବିଶ୍ୱାସ ଧର୍ମର ଆଧାର । ଈଶ୍ୱରବିଶ୍ୱାସ ବିନା ଧର୍ମର କଳ୍ପନା କରାଯାଇ ନପାରେ । ବିଶ୍ୱର ସବୁ ପ୍ରତିଷ୍ଠିତ ଧର୍ମ ଏହି ବିଶ୍ୱାସ ଉପରେ ଆଧାରିତ ଯେ ସୃଷ୍ଟିର ଜଣେ ଅଦୃଶ୍ୟ କର୍ତ୍ତା ଅଛନ୍ତି । ମାତ୍ର କେତେକ ଲୋକ ଈଶ୍ୱରଙ୍କ ପ୍ରତି ବିଶ୍ୱାସ କରନ୍ତି ନାହିଁ । ସେମାନେ କହନ୍ତି ଯେ ଈଶ୍ୱର ବୋଲି କେହି ନାହାନ୍ତି । ଏହା ମଣିଷର କଳ୍ପନାମାତ୍ର । ଧର୍ମ ନାମକ ଅଫିମ ଖୁଆଇ ସାଧାରଣ ଲୋକଙ୍କୁ ଧର୍ମଗୁରୁମାନେ ଭୁଆଁ ବୁଲାଉଛନ୍ତି । ବ୍ରହ୍ମାଣ୍ଡକୁ କେହି ତିଆରି କରିନାହିଁ । ଏହା ଆପେ ଆପେ ସୃଷ୍ଟି ହେଲା, ଆପେ କାର୍ଯ୍ୟ କରୁଛି ଏବଂ ଆପେ ଧ୍ୱଂସ ପାଇଯିବ ।

ଯେହେତୁ କର୍ତ୍ତା ଅଦୃଶ୍ୟ, ତେଣୁ ସେମାନେ ଈଶ୍ୱର ନାହାନ୍ତି ବୋଲି କହିଦିଅନ୍ତି । କୌଣସି ବସ୍ତୁ ଦେଖାଯାଏ ନାହିଁ ବୋଲି ଏହାର ଅସ୍ତିତ୍ୱ ହିଁ ନାହିଁ ବୋଲି କହିଦେବା କ'ଣ ଠିକ୍ ? କୌଣସି କଥା ପ୍ରତି ବିଶ୍ୱାସ କରିବା ବା ନକରିବା ପାଇଁ ଅବଶ୍ୟ ପ୍ରମାଣ ଆବଶ୍ୟକ । ଏହି ପ୍ରମାଣ ମୁଖ୍ୟତଃ ତିନି ପ୍ରକାରର । ପ୍ରଥମଟି ପ୍ରତ୍ୟକ୍ଷ ପ୍ରମାଣ, ଦ୍ୱିତୀୟଟି ବୌଦ୍ଧିକ ପ୍ରମାଣ ଏବଂ ତୃତୀୟଟି ଶବ୍ଦ ପ୍ରମାଣ । ଉଦାହରଣ ସ୍ୱରୂପ ଆପଣଙ୍କ ବନ୍ଧୁ ଘରେ ଅଛନ୍ତି ନା ନାହିଁ ଏହା ଜାଣିବା ପାଇଁ ଆପଣ ତାଙ୍କ ଘରକୁ ଯାଇ ନିଜ ଆଖିରେ ଦେଖିଲେ ଯେ ସେ ଅଛନ୍ତି । ଏହା ପ୍ରତ୍ୟକ୍ଷ ପ୍ରମାଣ । ଏହାଦ୍ୱାରା ଆପଣ ଦୃଢ଼ନିଶ୍ଚିତ ହେବେ ଯେ ବନ୍ଧୁ ଘରେ ଅଛନ୍ତି । ବନ୍ଧୁଙ୍କ ଘର ବାହାରେ ଥାଇ ସେ ଚାକରକୁ ଗାଳି ଦେଉଥିବାର କେବଳ ଆପଣ ଶୁଣିଲେ, କିନ୍ତୁ ତାଙ୍କୁ ଦେଖିଲେ ନାହିଁ । ଏହାଦ୍ୱାରା ମଧ୍ୟ ଆପଣଙ୍କ ମନରେ ଦୃଢ଼ବିଶ୍ୱାସ ଜାତ ହେବ ଯେ ବନ୍ଧୁ ଘରେ ଅଛନ୍ତି । ଏହାକୁ ବୌଦ୍ଧିକ ପ୍ରମାଣ କୁହାଯାଏ । ତୃତୀୟ ଧରଣର ପ୍ରମାଣ ହେଉଛି ଶବ୍ଦ ପ୍ରମାଣ । ଆପଣ ବନ୍ଧୁଙ୍କୁ ଘରେ ଦେଖି ନାହାନ୍ତି ବା ତାଙ୍କ ଶବ୍ଦ ମଧ୍ୟ ଶୁଣି ନାହାନ୍ତି ବା ତାଙ୍କ ଘରକୁ ମଧ୍ୟ ଯାଇନାହାନ୍ତି, କିନ୍ତୁ କେହି ଜଣେ ବ୍ୟକ୍ତି ଆପଣଙ୍କୁ ଖବର ଦେଲେ ଯେ ବନ୍ଧୁ ଘରେ ଅଛନ୍ତି । ବ୍ୟକ୍ତିଜଣକ

ସତ୍ୟବାଦୀ ହୋଇଥିଲେ ଆପଣ ଏହାକୁ ବିଶ୍ୱାସ କରି ନିଅନ୍ତି । ଏହା ଶବ୍ଦପ୍ରମାଣ । ଏଠି ଖବର ଦେଉଥିବା ବ୍ୟକ୍ତି ଉପରେ ଆପଣ ଭରସା କରନ୍ତି । ଯଦି ତାକୁ ଭ୍ରମ ହୋଇଥାଏ ବା ଖବରଟି ଆପଣଙ୍କ ପାଖରେ ପହଞ୍ଚିବା ମଧ୍ୟରେ କିଛି ବଦଳିଯାଇଥାଏ, ତେବେ ଆପଣଙ୍କ ଧାରଣା ଭୁଲ ହୋଇଯାଇପାରେ । ଶବ୍ଦ ପ୍ରମାଣ ମଧ୍ୟ ବୌଦ୍ଧିକ ଦୃଷ୍ଟିରୁ ପରୀକ୍ଷାସାପେକ୍ଷ ।

ଯେଉଁ କ୍ଷେତ୍ରରେ ପ୍ରତ୍ୟକ୍ଷ ପ୍ରମାଣ ନଥାଏ, ସେଠାରେ ବୌଦ୍ଧିକ ପ୍ରମାଣ ଦ୍ୱାରା ସତ୍ୟାସତ୍ୟ ନିର୍ଣ୍ଣୟ କରାଯାଏ । ଈଶ୍ୱରଙ୍କ ଅସ୍ତିତ୍ୱ ମଧ୍ୟ ବୌଦ୍ଧିକ ପ୍ରମାଣ ଦ୍ୱାରା ପ୍ରତିପାଦିତ ହୁଏ । ସଂସାରରେ ଅନେକ ବସ୍ତୁ ଦେଖାଯାଏ ନାହିଁ କିନ୍ତୁ ଆମେ ସେଗୁଡ଼ିକର ଅସ୍ତିତ୍ୱକୁ ସ୍ୱୀକାର କରୁ । ଶରୀର ମଧ୍ୟରେ ଆତ୍ମା ଥାଏ ଏବଂ ଆତ୍ମା ଛାଡ଼ିଗଲେ ସେହି ଶରୀରକୁ ଶବ କୁହାଯାଏ । ଆତ୍ମା ଦେଖାଯାଏ ନାହିଁ । ଏହା କ'ଣ ବା ଦେଖିବାକୁ କେମିତି, କେହି ଜାଣିନାହାନ୍ତି ବା ଦେଖିନାହାନ୍ତି; କିନ୍ତୁ ସମସ୍ତେ ମାନନ୍ତି । ବିଦ୍ୟୁତ ତାର ମଧ୍ୟରେ ବିଦ୍ୟୁତ ଅଛି ବା ନାହିଁ, ଆଖିକୁ ଦେଖାଯାଏ ନାହିଁ; କିନ୍ତୁ ଟେଷ୍ଟର୍ ଦ୍ୱାରା ପରୀକ୍ଷା କରି ମାନି ନିଆଯାଏ । ଗାଁ ଦାଣ୍ଡରେ ଆମେ ସାପଟିଏ ଯାଇଥିବାର ଚିହ୍ନ ଦେଖିଲୁ । ସାପକୁ ନ ଦେଖି କେବଳ ମାଟି ଉପରେ ତା' ଯିବା ଚିହ୍ନକୁ ଦେଖି ଆମେ ବିଶ୍ୱାସ କରିନେଉ ଯେ ଏ ବାଟରେ ସାପ ଯାଇଛି । ଗାଈକୁ ନ ଦେଖି, କେବଳ ତା' ଗୋବର ଦେଖି ଆମେ କହିଦେଉ ଯେ ଏ ବାଟରେ ଗାଈ ଯାଇଛି । ସବୁ କ୍ଷେତ୍ରରେ ପ୍ରତ୍ୟକ୍ଷ ପ୍ରମାଣର ଆବଶ୍ୟକତା ପଡ଼େନାହିଁ । କାରଣ ଥିଲେ କର୍ତ୍ତା ଅବଶ୍ୟ ଥାଏ ।

ଆମେ କ'ଣ କେବେ ଚିନ୍ତା କରିଛୁ ଯେ କିଏ ଆମକୁ ଏହି ସଂସାରକୁ ଆଣିଲା ? ଆମେ ତ ଏଠାକୁ ଆସିବା ପାଇଁ ଦରଖାସ୍ତ ଦେଇ ନଥିଲୁ ? ନିଜ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକୁ ମଧ୍ୟ ଆମେ ଗଢ଼ିନାହୁଁ । ଆମ ଅଜାଣତରେ କିଏ ଆମକୁ ଏହି ସଂସାରକୁ ନେଇ ଆସିଛି ? ଏଠି ଆମର ଖାଇବା, ପିଇବା ଓ ରହିବାର ସକଳ ପ୍ରକାରର ସାଧନ ଖଞ୍ଜି ଦେଇଛି ? ଆମେ ତ ଏଗୁଡିକ କରିନାହୁଁ ?

କିଏ ରୋଗବ୍ୟାଧି, ବାର୍ଦ୍ଧକ୍ୟ ବା ଦୁଃଖ ବିପଦ ଚାହେଁ ? ଏସବୁ ମଣିଷର ଇଚ୍ଛା ବିରୋଧରେ ଆସିଥାଏ । ସେହିପରି ମଣିଷ ସ୍ୱେଚ୍ଛାରେ ମରିବାକୁ

ଚାହେଁନାହିଁ । କିଏ ତାକୁ ମରିବା ପାଇଁ ବାଧ୍ୟ କରେ ? ବୀଜର ଅଙ୍କୁର ଭାରି କୋମଳ । ହାତରେ ମକଚି ଦେଲେ ନଷ୍ଟ ହୋଇଯାଏ; କିନ୍ତୁ କଠିନ ପଥରର ବୁକୁ ଫଟାଇ ପାହାଡ଼ ଚଟାଣରୁ କିଏ ଏହାକୁ ବାହାର କରି ଆଣେ ? ଗୋଟିଏ ସ୍ଥାନର ମାଟି ସମାନ, ପାଣି ସମାନ, ଉତ୍ତାପ ସମାନ, କିନ୍ତୁ ସେଠାର ଫଳ-ଫୁଲ ମଧ୍ୟରେ ଭିନ୍ନ ରଙ୍ଗ, ଭିନ୍ନ ଗନ୍ଧ ଓ ଭିନ୍ନ ସ୍ୱାଦ କିଏ ଭରିଦିଏ ? କିଏ ଟୋପାଏ ବୀର୍ଯ୍ୟବିନ୍ଦୁରୁ ଗର୍ଭାଶୟ ମଧ୍ୟରେ ମଣିଷ ଗଢେ ? କିଏ ଅନ୍ଧାର ଗର୍ଭରେ ଆଖି, କାନ, ହାତ, ଗୋଡ଼, ହୃତ୍‌ପିଣ୍ଡ, ଫୁସ୍‌ଫୁସ୍ ଭଳି ଜଟିଳ ଯନ୍ତ୍ର ରଚନା କରେ ? ନିଃଶ୍ୱାସପ୍ରଶ୍ୱାସ ଓ ଖାଦ୍ୟପେୟର ନିଖୁଣ ବ୍ୟବସ୍ଥା କରେ ? ମାଆକୁ ଜଣାନାହିଁ କି ବାପାକୁ ଜଣାନାହିଁ, ଗର୍ଭ ମଧ୍ୟରେ ସନ୍ତାନର ନିର୍ମାଣ ଚାଲିଛି । ଶିଶୁଟି ପାଇଁ ମାଆ ଛାତିରେ କ୍ଷୀର ମାଆ ରଖେନାହିଁ କି ଡାକ୍ତର ରଖନ୍ତି ନାହିଁ ? ପୁଣି କିଏ ଶିଶୁ ଆସିବା ପୂର୍ବରୁ ତା' ଖାଦ୍ୟ ସଜାଡ଼ିଦିଏ ? କିଏ ମୁଣ୍ଡର କେଶକୁ ବଢ଼ିବାକୁ ଅନୁମତି ଦିଏ; କିନ୍ତୁ ଆଖିପତାର କେଶକୁ ବଢ଼ିବାକୁ ଦିଏନାହିଁ ? ଜଳ ପରି ଗୋଟିଏ ତଳେ ରହିବା ବସ୍ତୁକୁ ବାଷ୍ପ କରି ଆକାଶକୁ କିଏ ନିଏ ? ବିରାଟ ଜଳଭଣ୍ଡାରଗୁଡ଼ିକ ମେଘ ହୋଇ ଭାସନ୍ତି । ସେଗୁଡ଼ିକ ଆକାଶରୁ ସିଧା ଖସି ପାରନ୍ତେ । ଏତେ ମାପିଚୁପି ସରୁ ସରୁ ଧାର କରି ବିଶାଳକାୟ ବାଦଲଗୁଡ଼ିକୁ ବର୍ଷା ରୂପରେ କିଏ ବିଞ୍ଚିଦିଏ ? ପୃଥିବୀର ତିନିଭାଗ ଜଳ ଏବଂ ଗୋଟିଏ ଭାଗ ସ୍ଥଳ । ଛୋଟ ଛୋଟ ନଦୀଗୁଡ଼ିକରେ ବନ୍ୟା ଆସିଲେ ଏହାର ପାଣି ଗ୍ରାମ ଓ ସହରକୁ ମାଡି ଆସେ, କିନ୍ତୁ ବିଶାଳ ସମୁଦ୍ରଗୁଡ଼ିକ କାହିଁକି ସୀମା ଲଂଘନ୍ତି ନାହିଁ ? କ'ଣ ଏସବୁ ଆକସ୍ମିକ ? ଆପେ ଆପେ ହୁଏ ?

ଆମେ ଦେଖୁ ପ୍ରକୃତିରେ ଅଦ୍ଭୁତ ଶୃଙ୍ଖଳା । ଜଳ, ସ୍ଥଳ, ଆକାଶ ଓ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଆଦି ପରସ୍ପର ମିଳିମିଶି ଶୃଙ୍ଖଳିତ ରୂପେ ନିଜର କର୍ତ୍ତବ୍ୟ କରିଚାଲିଛନ୍ତି । ସବୁଗୁଡ଼ିକ ସୁବ୍ୟବସ୍ଥିତ । ପୃଥିବୀ ତା' ଅକ୍ଷ ଚାରିପଟେ ଘଣ୍ଟାକୁ ପ୍ରାୟ ଏକହଜାର ମାଇଲ ବେଗରେ ଘୂରୁଛି । ଯଦି ଏହାର ଗତି ଘଣ୍ଟା ପ୍ରତି ଶହେ ମାଇଲ ହୋଇଥାଆନ୍ତା, ତେବେ ଦିନ ଓ ରାତି ବର୍ତ୍ତମାନର ଦିନ ଓ ରାତି ଅପେକ୍ଷା ଦଶ ଗୁଣ ଦୀର୍ଘ ହୁଅନ୍ତା ଏବଂ କ୍ରମାଗତ ଶହେ ଘଣ୍ଟାର ସୂର୍ଯ୍ୟତାପ ସବୁକିଛି ପୋଡି ପାଉଁଶ କରିଦିଅନ୍ତା । ଜୀବଜଗତ

ବଞ୍ଚିରହିବା ସମ୍ଭବ ହୁଅନ୍ତା ନାହିଁ । ସେହିପରି ସୂର୍ଯ୍ୟ ଆମଠାରୁ ୧୪କୋଟି ୯୬ ଲକ୍ଷ କିଲୋମିଟର ଦୂରରେ ରହିଛି । ଏହାର ଉପରି ଭାଗର ତାପମାତ୍ରା ପ୍ରାୟ ୬୦୦୦ ଡିଗ୍ରୀ ସେଣ୍ଟିଗ୍ରେଡ । ଏହି ଉତ୍ତାପ ପାହାଡ଼ ପର୍ବତଗୁଡ଼ିକୁ ମଧ୍ୟ ତରଳାଇ ଦେଇପାରେ । କିନ୍ତୁ ସୂର୍ଯ୍ୟ ପୃଥିବୀଠାରୁ ଏଭଳି ଏକ ସନ୍ତୁଳିତ ବ୍ୟବଧାନ ରକ୍ଷା କରିଚାଲିଛି ଯାହା ଫଳରେ ଆମକୁ ଆବଶ୍ୟକତାଠାରୁ ଅଧିକ ଉତ୍ତାପ ପହଞ୍ଚେ ନାହିଁ । ଯଦି ପୃଥିବୀଠାରୁ ସୂର୍ଯ୍ୟର ବ୍ୟବଧାନ ଦୁଇ ଗୁଣ ହୋଇଯାଏ, ତେବେ ଭୂପୃଷ୍ଠରେ ଏତେ ଥଣ୍ଡା ଅନୁଭୂତ ହେବ ଯେ ଜୀବଜଗତ ବରଫ ପାଲଟିଯିବେ । ଆଉ ଯଦି ଏହି ଦୂରତା ବର୍ତ୍ତମାନ ଦୂରତାର ଅଧା ହୋଇଯାଏ, ତେବେ ଏତେ ଉତ୍ତାପ ସୃଷ୍ଟି ହେବ ଯେ ଜୀବଜଗତ ପୋଡ଼ି ପାଉଁଶ ହୋଇଯିବ । ସେହିପରି ଚନ୍ଦ୍ର ଆମଠାରୁ ୩ ଲକ୍ଷ ୮୫ ହଜାର କିଲୋମିଟର ଦୂରରେ ଅବସ୍ଥିତ । ଯଦି ଏହି ବ୍ୟବଧାନ ଅଧା ହୋଇଯାଏ, ତେବେ ସମୁଦ୍ରଗୁଡ଼ିକରେ ଏତେ ଉଚ୍ଚର ଜୁଆର ଆସିବ ଯେ ସମଗ୍ର ସ୍ଥଳଭାଗକୁ ବୁଡ଼ାଇଦେବ । ମହାକାଶରେ ଘୂରୁଥିବା ଗୋଟିଏ ମାତ୍ର ଗ୍ରହର କକ୍ଷଚ୍ୟୁତି ପୃଥିବୀକୁ ଧ୍ୱଂସ କରିଦେବା ପାଇଁ ଯଥେଷ୍ଟ । ବିଶାଳ ଗ୍ରହଗୁଡ଼ିକର ଅସାଧାରଣ ଶୃଙ୍ଖଳା ଓ ପରସ୍ପର ସହିତ ସେଗୁଡ଼ିକର ଅଦ୍ଭୁତ ସହଯୋଗ କ'ଣ ଆକସ୍ମିକ ? କ'ଣ ଆକସ୍ମିକତା ଏତେଗୁଡ଼ିଏ ମହାଶକ୍ତିଙ୍କୁ ଯୁଗ ଯୁଗ ଧରି ଶୃଙ୍ଖଳିତ କରି ରଖିପାରେ ?

ସଂସାରର କୌଣସି ବସ୍ତୁ ଆପେ ଆପେ ତିଆରି ହୋଇପାରେ ନାହିଁ । ସାମାନ୍ୟ ଟେବୁଲଟିଏ ହେଉ, ଚୌକିଟିଏ ହେଉ ବା ଘରଟିଏ ହେଉ, କେହି ତାକୁ ତିଆରି କରିଥାଏ । ମନେକରନ୍ତୁ ଆପଣ କୌଣସି ଜଙ୍ଗଲ ମଧ୍ୟରେ ଗୋଟିଏ ପୁରୁଣା ପରିତ୍ୟକ୍ତ ଘର ଦେଖିଲେ । ଘରଟିରେ ମଣିଷର ବସବାସ କରିବା ପାଇଁ ସବୁ ଦରକାରୀ ବ୍ୟବସ୍ଥା କରାଯାଇଛି । ସେଥିରେ ଯିବା ଆସିବା ପାଇଁ ଦୁଆର, ଆଲୋକ ଓ ପବନ ପାଇଁ ଝରକା, ନିତ୍ୟକର୍ମ ପାଇଁ ଗାଧୁଆଘର, କୂଅ ଓ ପାଇଖାନା, ରାନ୍ଧିବା ପାଇଁ ରୋଷେଇଶାଳ, ଶୋଇବାଘର ଓ ବୈଠକଖାନା ଆଦି ରହିଛି । ଯଦି କେହି ଆପଣଙ୍କୁ କହେ ଯେ ଏହି ଘରଟି ଆକସ୍ମିକ ରୂପେ ତିଆରି ହୋଇଯାଇଛି, ତେବେ କ'ଣ ଆପଣ ତାକୁ ପାଗଳ କହିବେ ନାହିଁ ? ଯଦିଓ ଘରର ନିର୍ମାତାକୁ ଆପଣ ଦେଖିନାହାନ୍ତି ବା

ନିର୍ମାଣ ସମୟରେ ଆପଣ ଉପସ୍ଥିତ ନଥିଲେ, ତଥାପି ଆପଣ ବିଶ୍ୱାସର ସହିତ କହିପାରିବେ ଯେ ନିଶ୍ଚୟ ଏହାକୁ କେହି ନିର୍ମାଣ କରିଛି । ଏଭଳି ସୁବ୍ୟବସ୍ଥିତ ଘରଟି କଦାପି ଆପେ ଆପେ ତିଆରି ହୋଇନାହିଁ । ଏଠାରେ କେବଳ କାରଣରୁ ଆମେ କର୍ତ୍ତାର ଅନୁମାନ କରିନେଉ ।

ଜଣେ ସାଧୁଙ୍କୁ ପ୍ରଶ୍ନ କରାଗଲା ଯେ, ଆପଣ ଈଶ୍ୱରଙ୍କୁ କିପରି ଜାଣିଲେ ? ସାଧୁ ଉତ୍ତର ଦେଲେ—"ମାତ୍ର ଗୋଟିଏ ଅଣ୍ଡାରୁ ତାଙ୍କୁ ଜାଣିଲି । ମୁଁ ଦେଖିଲି ଗୋଟିଏ ଧଳା ଚକ୍‌ଚକ୍ ଘର । ଘରର ଚାରିପଟେ ଝରକା ନାହିଁ କି କାନ୍ଥ ନାହିଁ ବା ପବନ ଯିବାର କୌଣସି ବାଟ ମଧ୍ୟ ନାହିଁ । ହଠାତ୍ ଘରର କାନ୍ଥ ଫାଟିଲା ଏବଂ ତା' ଭିତରୁ ଜୀବନ୍ତ ପ୍ରାଣୀଟିଏ ବାହାରି ଆସିଲା । ବାହାରିବାର କିଛି ସମୟ ମଧ୍ୟରେ ସେ ଖାଇବା, ବୁଲିବା, କଥା କହିବା ଆରମ୍ଭ କରିଦେଲା । ତା'ର ସବୁ ବ୍ୟବହାର ଜଣେ ପ୍ରଶିକ୍ଷିତ ପ୍ରାଣୀ ପରି ଥିଲା, ସତେ ଯେପରି କେହି ତାକୁ ଶିଖାଇଛି । ଏହି କଥା ମୋତେ ଆଶ୍ଚର୍ଯ୍ୟ କଲା ଯେ ଅଣ୍ଡା ଭିତରକୁ ବାହାରୁ ତ କେହି ପଶିନାହିଁ । ସେ ରୁଦ୍ଧ କୋଠରୀ ଭିତରେ କୁକୁଡାଛୁଆ ବଞ୍ଚି ରହିଥିଲା କିପରି ଏବଂ ତାକୁ ଏତେକଥା ତା' ଭିତରେ ଶିଖାଇଲା କିଏ ? ଏଇ ଘଟଣାରୁ ମୁଁ ଜାଣିଲି ଯେ କେହି ଜଣେ ଅଛି ଯିଏ ଅଣ୍ଡା ଭିତରେ ଏସବୁ କରିଛି ଏବଂ ସେଇ ହିଁ ଈଶ୍ୱର ।"

ଜଣେ କବି ତା' ଜ୍ଞାନ, ବୁଦ୍ଧି ଓ ସୃଜନଶକ୍ତି ବ୍ୟବହାର କରି କବିତା ରଚନା କରିଥାଏ । ଏହାବ୍ୟତୀତ କବିତା ରଚନା ସମ୍ଭବ ନୁହେଁ । ଯଦି ଗୋଟାଏ ମାଙ୍କଡ କଲମଟିଏ ଧରି ବର୍ଷ ବର୍ଷ ଧରି ମନଇଚ୍ଛା କାଗଜରେ ଗାର ଟାଣିଚାଲେ, ତା' କାଗଜଗଦା ଭିତ୍ରରୁ ଆକସ୍ମିକ ଭାବେ କାଳିଦାସଙ୍କ କବିତାଟିଏ ବାହାରିପଡ଼ିବା ସମ୍ଭବ କି ? ସେହିପରି ଆବଶ୍ୟକ ଜ୍ଞାନ, ଶକ୍ତି ବା ଯୋଜନା ବିନା ଆକସ୍ମିକ ଭାବେ ଏକ ଶୃଙ୍ଖଳିତ ବିଶ୍ୱବ୍ୟବସ୍ଥା ଆଦୌ ସମ୍ଭବ ନୁହେଁ । ବ୍ରହ୍ମାଣ୍ଡର ରଚନା ଓ ସଞ୍ଚାଳନା ପଛରେ ଅବଶ୍ୟ ଜଣେ ମହାଜ୍ଞାନୀ ଓ ମହାଶକ୍ତିସମ୍ପନ୍ନ ସତ୍ତା କାର୍ଯ୍ୟ କରୁଛି । ଯେପରି କବିତାରୁ କବିର ଜ୍ଞାନ ଓ ପ୍ରତିଭାର ପରିଚୟ ମିଳେ, ସେହିପରି ସୃଷ୍ଟିରୁ ସ୍ରଷ୍ଟାଙ୍କ ଶକ୍ତି ଓ ମହିମା ଉପଲବ୍ଧି କରିହୁଏ ।

ଶିକ୍ଷିତ ହେଉ ବା ଅଶିକ୍ଷିତ ହେଉ, ପ୍ରତ୍ୟେକ ମଣିଷ ମଧ୍ୟରେ ଈଶ୍ୱରଙ୍କୁ ଉପଲବଧି କରିବାର ଏକ ଅନ୍ତର୍ନିହିତ ଶକ୍ତି ରହିଛି । ସେ ତାଙ୍କୁ ଦେଖିପାରେ ନାହିଁ, ମାତ୍ର ଅନୁଭବ କରିପାରେ । ଅତି ସାଧାରଣ ଲୋକଙ୍କର ମଧ୍ୟ ଗଭୀର ଭଗବତ୍‌ବିଶ୍ୱାସ ଥିବାର ଆମେ ଦେଖୁ । ବୁଢ଼ୀଟିଏ ଦାଣ୍ଡପିଣ୍ଡାରେ ବସି ଅରଟରେ ସୂତା କାଟୁଥାଏ । ବାଟୋଇ ଜଣେ ତା' ପାଖକୁ ଆସି ପଚାରିଲେ—ଆଚ୍ଛା ମାଉସୀ, ତୁମେ କ'ଣ ଏହା ବିଶ୍ୱାସ କର ଯେ ଈଶ୍ୱର ଅଛନ୍ତି ଏବଂ ସେ ହିଁ ଏ ସଂସାର ଚଳାଉଛନ୍ତି ? ବୁଢ଼ୀ ଉତ୍ତର ଦେଲା—'ହଁ' । ବାଟୋଇ ପୁଣି ପ୍ରଶ୍ନ କଲେ—ତୁମେ କେମିତି ଏହା ବିଶ୍ୱାସ କରୁଛ ? ଏହାର ପ୍ରମାଣ କ'ଣ ଅଛି ? ଏଥର ବୁଢ଼ୀଟି ଅରଟ ଛାଡି ବସିପଡିଲା । ତା'ପରେ ବାଟୋଇକୁ ପଚାରିଲା—ବାପା ! ମୋତେ ଟିକେ କହ, ଏ ଅରଟଟି କାହିଁକି ଚାଲୁନାହିଁ ? ବାଟୋଇ ଜଣକ କହିଲେ—ଆଚ୍ଛାକଥା, ତୁମେ ପରା ଚଲେଇବା ବନ୍ଦ କରିଦେଲ ! ଆଉ ଚାଲନ୍ତା କିପରି ? ବୁଢ଼ୀଜଣକ ଅଳ୍ପ ହସି କହିଲା—ବାପା, ଏଇ ସାମାନ୍ୟ କଥାଟି ବୁଝିପାରୁନୁ ? ଯଦି ଏଇ ଛୋଟ ଅରଟଟି ଚାଳକ ବିନା ଚାଲିପାରୁନାହିଁ, ତେବେ ଏତେ ବଡ଼ ସଂସାରଟା ଆପଣାଛାଏଁ କିପରି ଚାଲିବ ? ବାଟୋଇଜଣକ ବୁଢ଼ୀ ଉତ୍ତର ଶୁଣି ଚୁପ୍ ହୋଇଗଲେ ।

ବାଗଦାଦର ଜଣେ ରାଜା ନାସ୍ତିକ ଓ ଆସ୍ତିକମାନଙ୍କ ମଧ୍ୟରେ ଏକ ତର୍କସଭାର ଆୟୋଜନ କଲେ । ଉଭୟ ମତବାଦର ବିଶିଷ୍ଟ ବିଦ୍ୱାନ ରାଜସଭାକୁ ଆମନ୍ତ୍ରିତ ହେଲେ । ସେତେବେଳେ ଇରାକରେ ଇମାମ୍ ଗଜାଲୀ ନାମକ ଜଣେ ବିଦ୍ୱାନ୍ ଥିଲେ । ତାଙ୍କୁ ଈଶ୍ୱରଙ୍କ ଅବସ୍ଥିତିର ପ୍ରମାଣ ଦେବାକୁ କୁହାଗଲା । ପ୍ରତିପକ୍ଷ ପଣ୍ଡିତ ଓ ସଭାସଦଗଣ ରାଜସଭାକୁ ଆସି ସାରିଥିଲେ; କିନ୍ତୁ ପଣ୍ଡିତ ଗଜାଲୀଙ୍କର ଦେଖା ନଥିଲା । କାର୍ଯ୍ୟକ୍ରମରେ ବିଳମ୍ବ ହେତୁ ରାଜା ଅସନ୍ତୁଷ୍ଟ ହେଲେ ଏବଂ ନାସ୍ତିକବାଦର ସମର୍ଥକମାନେ ପରିହାସ କରିବାକୁ ଲାଗିଲେ ଯେ ଆମ ଈଶ୍ୱରଭକ୍ତ ପଣ୍ଡିତ ହାରିଯିବା ଭୟରେ ଆସିଲେ ନାହିଁ । ଅନେକ ବିଳମ୍ବ ପରେ ପଣ୍ଡିତ ଗଜାଲୀ ରାଜସଭାରେ ପ୍ରବେଶ କଲେ । ସେ ବିବ୍ରତ ଓ ଭୟଭୀତ ଦେଖାଯାଉଥାଆନ୍ତି । ରାଜା ନିଜର ଅସନ୍ତୋଷ ବ୍ୟକ୍ତ କରି ତାଙ୍କୁ ବିଳମ୍ବରେ ଆସିବାର କାରଣ ପଚାରିଲେ । ସନ୍ଥ ଉତ୍ତର ଦେଲେ—"ମହାରାଜ ! କ୍ଷମା ପ୍ରାର୍ଥନା କରୁଛି । ବାଟରେ ଗୋଟିଏ ଅଦ୍ଭୁତ ଘଟଣା ମୋ

ସହିତ ଘଟିଲା ଯାହାଦ୍ୱାରା ମୋ ଆସିବାରେ ବିଳମ୍ବ ହେଲା । ମୋତେ ଟିକିଏ ପ୍ରକୃତିସ୍ଥ ହେବାକୁ ଦିଅନ୍ତୁ, ମୁଁ କହିବି ।" ରାଜା ପଚାରିଲେ—"କ'ଣ ହେଲା ?" ସଭାସଦ୍‌ଗଣ ମଧ୍ୟ ଉତ୍ସୁକ ହୋଇ ପଣ୍ଡିତଙ୍କ ଆଡକୁ ଚାହିଁଲେ । ପଣ୍ଡିତ କହିଲେ—"ମହାରାଜ ! ଏଭଳି ବିସ୍ମୟକର ଘଟଣା ମୋ ଜୀବନରେ ଦେଖି ନଥିଲି । କହିଲେ ଆପଣମାନେ ମଧ୍ୟ ବିଶ୍ୱାସ କରିବେ ନାହିଁ ।" ରାଜା ଆଦେଶ ଦେଲେ—''କ'ଣ ହେଲା ବର୍ଣ୍ଣନା କରନ୍ତୁ ।'' ସନ୍ଥ କହିଲେ—

"ମହାରାଜ ! ମୁଁ ଆସିବା ବାଟରେ ଗୋଟିଏ ବଡ଼ ନଈ ପଡିଲା । ନଈପାରି ହେବାପାଇଁ କୂଳରେ ମୁଁ ନୌକା ଅପେକ୍ଷାରେ ଥାଏ; କିନ୍ତୁ ଆଜି ଘାଟରେ ଗୋଟିଏ ହେଲେ ନୌକା ନ ଥିଲା । ବହୁ ସମୟ ପର୍ଯ୍ୟନ୍ତ କୌଣସି ନୌକା ନ ଆସିବାରୁ କେମିତି ରାଜସଭାକୁ ଆସିବି ଭାବି ମୁଁ ବ୍ୟସ୍ତ ହୋଇ ପଡ଼ିଲି । ହଠାତ୍ ଦେଖିଲି ଗଭୀର ଜଳ ମଧ୍ୟରୁ  କାଠ ପଟାଗୁଡ଼ିଏ ଉପରକୁ ଉଠି ଭାସିବାକୁ ଲାଗିଲା । ପୁଣି କିଛି ସମୟ ପରେ ହାତୁଡ଼ି, କରତ ଓ କଣ୍ଟା ଇତ୍ୟାଦି ବାହାରିଲା । ତା'ପରେ ମୋ ଆଶ୍ଚର୍ଯ୍ୟର ସୀମା ରହିଲାନାହିଁ ଯେତେବେଳେ ମୁଁ ଦେଖିଲି ଯେ କରତ ଆପେ ଆପେ ପଟାଗୁଡ଼ିକୁ କାଟିବାକୁ ଆରମ୍ଭ କଲା । କାଟିବା ଲୋକ କେହି ଦେଖାଯାଉ ନ ଥିଲା । ପୁଣି ପଟାଗୁଡ଼ିକ ଆପଣାଛାଏଁ ଯୋଡ଼ିହେବାକୁ ଲାଗିଲା । ତା'ପରେ କଣ୍ଟାଗୁଡ଼ିକ ନିଜ ସ୍ଥାନରେ ଲାଗିଗଲା ଏବଂ ହାତୁଡ଼ି ସେଗୁଡ଼ିକୁ ପିଟିଲା । ନଈ ମଧ୍ୟରେ ଏହିଭଳି ଅଦ୍ଭୁତ କାର୍ଯ୍ୟକ୍ରମ କିଛି ସମୟ ଧରି ଚାଲିଲା ଏବଂ ଆସ୍ତେ ଆସ୍ତେ ମୋ ଆଖି ସାମନାରେ ଗୋଟିଏ ସୁନ୍ଦର ଡଙ୍ଗା ତିଆରି ହୋଇଗଲା । ମୁଁ ସେତେବେଳକୁ ସ୍ତବ୍ଧ ହୋଇଯାଇଥାଏ । ପୁଣି ଦେଖିଲି, ସେହି ଚାଳକବିହୀନ ଡଙ୍ଗାଟି ମୋ ଆଡ଼କୁ ଧୀରେ ଧୀରେ ଆସିବାକୁ ଲାଗିଲା ଏବଂ ମୋ ପାଖରେ ଆସି ରହିଗଲା । ମୋତେ ଭୟ ଲାଗିଲା ଯେ ବୋଧହୁଏ କୌଣସି ଭୂତ ବା ପ୍ରେତ ଏହା କରୁଛି । ପୁଣି ଭାବିଲି ମୁଁ ତ ଈଶ୍ୱରଙ୍କ କାର୍ଯ୍ୟରେ ବାହାରିଛି । ବୋଧହୁଏ ସେ ମୋର ଦୈବୀ ସହାୟତା କରୁଛନ୍ତି । ଏହା ଭାବି ମୁଁ ନୌକାରେ ବସିଗଲି । ତା'ପରେ ସେ ନୌକାଟି ଧୀରେ ଧୀରେ ଚାଲିଲା । ମୋତେ ଲାଗିଲା ସତେଯେପରି ଜଣେ କୁଶଳୀ ନାଉରୀ ନୌକା ବାହୁଛି । କିଛି ସମୟ ପରେ

ଡଙ୍ଗାଟି ଆସି ନଈ ଆରପାରିରେ ଲାଗିଲା । ମୁଁ ଓହ୍ଲାଇଗଲି । ତା'ପରେ ନୌକାଟି ମଙ୍ଗ ମୋଡ଼ି ନଈ ଭିତରକୁ ମୁହଁ କଲା ଏବଂ ଧୀରେ ଧୀରେ ମୋ ଦୃଷ୍ଟିରୁ ଅଦୃଶ୍ୟ ହୋଇଗଲା । ମହାରାଜ! ଏହାହିଁ ମୋ ବିଳମ୍ବର କାରଣ ।" ଘଟଣାଟି ବର୍ଣ୍ଣନା କରି ପଣ୍ଡିତ ଗୋଟିଏ ଦୀର୍ଘନିଃଶ୍ୱାସ ନେଲେ ।

ରାଜାଙ୍କ ସହ ସଭାସଦ୍‌ଗଣ ମଧ କହିଉଠିଲେ—"ଅସମ୍ଭବ କଥା । ଗୋଟାଏ ଡଙ୍ଗା ଆପେ ଆପେ ତିଆରି ହେଲା ଆଉ ବିନା ନାଉରୀରେ ଆପଣଙ୍କୁ ନଈପାର କରିଦେଲା ? ଏହା କଦାପି ସମ୍ଭବ ନୁହେଁ ।" ପ୍ରତିପକ୍ଷ ପଣ୍ଡିତମାନେ ପରିହାସ କଲେ—"ପଣ୍ଡିତ ମହାଶୟଙ୍କ ମୁଣ୍ଡ କାମ କରୁନାହିଁ, ସେଥିପାଇଁ ବାଚାଳଙ୍କ ପରି କଥା କହୁଛନ୍ତି ।" ପଣ୍ଡିତ ଗଜାଲୀ ବିନମ୍ରତାର ସହ କହିଲେ—"ମହାରାଜ ! କାହିଁକି ଏହା ସମ୍ଭବ ନୁହେଁ ? ଯଦି ଗ୍ରହ, ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ର, ଜୀବଜନ୍ତୁ ବା ମଣିଷ କୌଣସି କୁଶଳୀ କାରିଗର ବିନା ଆପେ ଆପେ ତିଆରି ହୋଇଯିବା ସମ୍ଭବ, ଯଦି କୌଣସି ଚାଳକ ବିନା ବ୍ରହ୍ମାଣ୍ଡର ଶୃଙ୍ଖଳିତ ସଞ୍ଚାଳନା ସମ୍ଭବ, ତେବେ ସାମାନ୍ୟ କାଠର ଡଙ୍ଗାଟି ଆପଣାଛାଏଁ ତିଆରି ହୋଇଯିବା ବା ବିନା ଚାଳକରେ ଚାଲିବା କାହିଁକି ସମ୍ଭବ ନୁହେଁ ? ଯଦି ମୋ କଥା ବାଚାଳତା, ତେବେ ଯେଉଁମାନେ ସ୍ରଷ୍ଟା ବିନା ସୃଷ୍ଟି ସମ୍ଭବ ବୋଲି କହନ୍ତି ସେମାନଙ୍କ କଥାକୁ କ'ଣ କୁହାଯିବ ?" ସଭାସଦ୍‌ଗଣ ନୀରବ ହୋଇଗଲେ । ରାଜା ଘୋଷଣା କଲେ—"ବିତର୍କ ସମାପ୍ତ ହେଲା । ପଣ୍ଡିତ ଗଜାଲୀ ଠିକ୍ କହୁଛନ୍ତି । ଈଶ୍ୱର ଅବଶ୍ୟ ଅଛନ୍ତି ।"

ଈଶ୍ୱରଙ୍କୁ ଆଖିରେ ଦେଖିବା ପରେ ନୁହେଁ, ବରଂ ନ ଦେଖି ମାନିନେବାକୁ ଧର୍ମର ଭାଷାରେ ଭଗବତ୍-ବିଶ୍ୱାସ କୁହାଯାଏ । ଆଜି ବିଜ୍ଞାନ ଯୁଗରେ ମଣିଷ ଗବେଷଣା କରୁଛି ସୃଷ୍ଟିର ପାର୍ଥିବ ବସ୍ତୁ ଉପରେ । ସୂର୍ଯ୍ୟ-ଚନ୍ଦ୍ର, ପାଣି-ପବନ, ଜୀବ-ଜନ୍ତୁ ଆଉ ମାଟି-ପଥର ଉପରେ । ଯଦି ନିଜ ସ୍ରଷ୍ଟାଙ୍କ ସମ୍ପର୍କରେ ଅନୁସନ୍ଧାନ କରନ୍ତା, ତାଙ୍କୁ ଖୋଜନ୍ତା, ତେବେ ତାଙ୍କୁ ପାଇପାରନ୍ତା ଏବଂ ତା' ଜୀବନ ସାର୍ଥକ ହୁଅନ୍ତା । ତାଙ୍କୁ ଜାଣିବା ମଣିଷର ପ୍ରଥମ କର୍ତ୍ତବ୍ୟ ଏବଂ ତାଙ୍କୁ ପାଇବା ମଣିଷର ପରମ ସୌଭାଗ୍ୟ । ଯିଏ ଦୁର୍ଲଭ ମଣିଷ ଜୀବନ ଦେଇଛନ୍ତି, ଯିଏ ଆମକୁ ଜୀବିତ ରଖିବା ପାଇଁ

ଧରିତ୍ରୀ ଓ ଆକାଶକୁ ଆମ ସେବାରେ ନିଯୁକ୍ତ କରିଛନ୍ତି, ଯାହାଙ୍କ ନିକଟକୁ ଆମେ ନିଶ୍ଚୟ ଫେରିବା, ଜୀବନକାଳ ମଧ୍ୟରେ ତାଙ୍କୁ ଚିହ୍ନିବାର ଚେଷ୍ଟା ନକରିବା ଏକ ଅପୂରଣୀୟ କ୍ଷତି ।

ମଣିଷ ଜୀବନରେ ଭଗବତ୍‌ବିଶ୍ୱାସର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଏହା ଭକ୍ତ ଓ ଭଗବାନଙ୍କ ମଧ୍ୟରେ ସମ୍ପର୍କଟିଏ ଗଢିଥାଏ ଏବଂ ତାଙ୍କ ପ୍ରତି ମନରେ ପରମ ପ୍ରେମଭାବ ସୃଷ୍ଟି କରେ ଯାହାକୁ ଭକ୍ତି କୁହାଯାଏ । ଭକ୍ତି ହେଉଛି ସାଧନାପଥର ପ୍ରଥମ ନିୟମ । ଏହା ଗଭୀର ହେଲେ ଧୀରେ ଧୀରେ ଭକ୍ତ ଜୀବନରେ ପରିବର୍ତ୍ତନ ଆଣିବା ଆରମ୍ଭ କରେ । ତା' ଚିନ୍ତାରେ, ଚେତନାରେ, ଦୃଷ୍ଟିକୋଣରେ ଏବଂ ଆଚାର ବ୍ୟବହାରରେ ପରିବର୍ତ୍ତନ ଆଣେ । ମଣିଷ ଭିତରେ ଶୃଙ୍ଖଳା ଓ ଦାୟିତ୍ୱବୋଧ ଆଣେ । ତା' ଚିତ୍ତ ଶୁଦ୍ଧ ହୁଏ ଏବଂ ଆଚରଣ ସଂଯତ ହୁଏ । ଆସ୍ତିକତା ମଣିଷକୁ ଧାର୍ମିକ କରେ । ଆତ୍ମଶାନ୍ତି ମଧ୍ୟ ଆସ୍ତିକତାରୁ ମିଳିଥାଏ । ଇନ୍ଦ୍ରିୟସୁଖ ବା ଭୌତିକ ବସ୍ତୁର ଉପଭୋଗ ଦ୍ୱାରା ଏଭଳି ଶାନ୍ତି ମିଳେନାହିଁ । ଏହାବ୍ୟତୀତ ଈଶ୍ୱରବିଶ୍ୱାସ ମଣିଷକୁ ଆତ୍ମବଳ ଦେଇଥାଏ ଯାହାଦ୍ୱାରା ସେ ବଡ଼ ବଡ଼ ପ୍ରଲୋଭନ ସହିତ ସଂଘର୍ଷ କରିବାକୁ ସମର୍ଥ ହୁଏ । ମଣିଷ ମଧ୍ୟରେ ଧୈର୍ଯ୍ୟ, ସଂଯମ ଓ ନ୍ୟାୟ ବିଚାର ଭଗବତ ବିଶ୍ୱାସରୁ ହିଁ ଜନ୍ମ ନିଏ ।

ମୋଟାମୋଟି ଭାବରେ, ଭଗବତବିଶ୍ୱାସ ବିନା ମଣିଷ ତା' କର୍ତ୍ତବ୍ୟ ପାଳନ କରିପାରିବ୍ ନାହିଁ । ଯିଏ ବିଶ୍ୱାସ କରେ ଯେ ଈଶ୍ୱର ନାହାନ୍ତି, ତାଙ୍କ ନୀତି ନିୟମ କିଛି ନାହିଁ ଏବଂ ଯାହା କଲେ ମଧ୍ୟ ତା'ର କେହି କିଛି କରିପାରିବେ ନାହିଁ, ତା' ନିକଟରେ ପାପ ଓ ପୁଣ୍ୟର ପରିଭାଷା ସମାନ । ଯିଏ ମନେକରେ ଯେ ସ୍ୱର୍ଗ ଓ ନର୍କ କୌଣସି କବିର ପରିକଳ୍ପନା ବା ପୁନର୍ଜୀବନ କୌଣସି ପାଗଳର ପ୍ରଳାପ, ସେ ଅପରାଧ କରିବାକୁ କାହିଁକି ଭୟ କରିବ ? ଆଶ୍ଚର୍ଯ୍ୟର କଥା, ଫ୍ରିଜ୍‌ଟିଏ ହେଉ, କାର୍‌ଟିଏ ହେଉ ବା କମ୍ପ୍ୟୁଟର୍‌ଟିଏ ହେଉ, ଏହାକୁ ଆମେ ନିଜ ବୁଦ୍ଧି ଅନୁଯାୟୀ ବ୍ୟବହାର କରୁନା । ଏଥିପାଇଁ ଆମେ ଏହାର ନିର୍ମାତାର ଉପଦେଶର ଆବଶ୍ୟକତା ଅନୁଭବ କରୁ, କିନ୍ତୁ ସଂସାରର ସବୁଠାରୁ ଜଟିଳ ସୃଷ୍ଟି ମଣିଷ ପାଇଁ ତା' ନିର୍ମାତା କୌଣସି

ନିୟମ ଦେଇନାହାନ୍ତି ବୋଲି ଖୁବ୍ ସହଜରେ କହିଦେଉ । କୌଣସି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବା ପୂର୍ବରୁ ଭଲରୂପେ ବିଚାର କରିବା ଉଚିତ, କାରଣ ଅନେକ ସମୟରେ ଏଥିପାଇଁ ଅନୁତାପ କରିବାକୁ ପଡ଼ିଥାଏ ।

ସତ୍ୟ ସବୁବେଳେ ସତ୍ୟ ହିଁ ରହେ । ମଣିଷର ଧାରଣା ଅନୁଯାୟୀ ଏହା ବଦଳିଯାଏ ନାହିଁ । ସ୍ରଷ୍ଟା ଅଛନ୍ତି ଏବଂ ସୃଷ୍ଟି ପାଇଁ ତାଙ୍କର ନିୟମ ମଧ୍ୟ ଅଛି । ଘଟଣାଟି ଯେପରି, ତାକୁ ଠିକ୍ ସେହିପରି ମାନିବା ସଦ୍‌ବିଶ୍ୱାସ ଏବଂ ଏହାର ବିପରୀତ ମାନିବା ଅସଦ୍‌ବିଶ୍ୱାସ । ଅସଦ୍‌ବିଶ୍ୱାସ ମଣିଷର ଦୁଃଖର କାରଣ ହୋଇଥାଏ ।



# ବ୍ରହ୍ମ ପରିଚୟ

ସେହି ପବିତ୍ର ସତ୍ତା ଜଣକ କିଏ, ଯାହାଙ୍କୁ ଲୋକେ ଈଶ୍ୱର, ବ୍ରହ୍ମ, ଗଡ୍ ବା ଅଲ୍ଲାହ୍ ବୋଲି ଡାକନ୍ତି ? ତାଙ୍କ ସ୍ୱରୂପ କ'ଣ ? ତାଙ୍କ ଗୁଣ ଓ ସ୍ୱଭାବ କିପରି ? ସେ ଏକ ନା ଅନେକ, ସାକାର ନା ନିରାକାର, ସେ କ'ଣ କରନ୍ତି ? ଆମ ସହ ତାଙ୍କର ସମ୍ପର୍କ କ'ଣ ? ଏହିଭଳି ଅନେକ ପ୍ରଶ୍ନ ମନକୁ ଆନ୍ଦୋଳିତ କରେ । ଏହାର ଉତ୍ତର ମଣିଷ ଖୋଜିଥାଏ ନିଜ ଧର୍ମଗୁରୁଙ୍କ ବାଣୀ ମଧ୍ୟରେ, ପରିବାର ପରମ୍ପରା ମଧ୍ୟରେ ବା ନିଜ ଧର୍ମଶାସ୍ତ୍ରର ପୃଷ୍ଠା ଭିତରେ । ଯେଉଁଭଳି ଉତ୍ତର ସେ ପାଏ, ତା'ର ଭଗବତ୍ ଧାରଣା ସେହିପରି ହୋଇଥାଏ । ଧର୍ମଗ୍ରନ୍ଥଗୁଡ଼ିକରେ ପ୍ରକ୍ଷେପଣ ଯୋଗୁଁ ହେଉ, ଭାଷ୍ୟର ପ୍ରଭେଦ ଯୋଗୁଁ ହେଉ ବା ବିଭିନ୍ନ ଦର୍ଶନର ପ୍ରଭାବ ଯୋଗୁଁ ହେଉ, ବିଶ୍ୱରେ ଈଶ୍ୱରଙ୍କ ସମ୍ପର୍କରେ ଅନେକ ମତବାଦ ସୃଷ୍ଟି ହୋଇଯାଇଛି ଯାହା ପ୍ରାଚୀନ ମାନବ ସଭ୍ୟତାରେ ନଥିଲା । ଏକେଶ୍ୱରବାଦ, ବହୁଈଶ୍ୱରବାଦ, ଅଦ୍ୱୈତବାଦ, ଦ୍ୱୈତବାଦ, ସାକାରବାଦ, ନିରାକାରବାଦ, ନାସ୍ତିକତାବାଦ, ମାୟାବାଦ, ଶୂନ୍ୟବାଦ, ଏହିପରି ଅନେକ ମତବାଦ ମଧ୍ୟରେ ଈଶ୍ୱରଙ୍କ ପରିଚୟ ରହସ୍ୟମୟ ହୋଇଯାଇଛି । ଏପରିକି ଗୋଟିଏ ଗୋଟିଏ ଧର୍ମରେ ଈଶ୍ୱରବାଦର ଏକାଧିକ ତତ୍ତ୍ୱ ଦେଖିବାକୁ ମିଳେ । ଧର୍ମ ଓ ଧର୍ମଗ୍ରନ୍ଥ ସମାନ ରହିଥିଲେ ମଧ୍ୟ ଧର୍ମଗୁରୁମାନେ ଈଶ୍ୱରଙ୍କର ଏକ ନିର୍ଦ୍ଦିଷ୍ଟ ପରିଭାଷା ସହ ଏକମତ ହୁଅନ୍ତି ନାହିଁ ।

ଯାହାହେଉ, ବିଭିନ୍ନ ମତଭେଦ ସତ୍ତ୍ୱେ ଅନେକ ଧର୍ମଗ୍ରନ୍ଥରେ ବ୍ରହ୍ମତତ୍ତ୍ୱର ବହୁ ସାମଞ୍ଜସ୍ୟ ମଧ୍ୟ ଆମେ ଦେଖୁ । ଈଶ୍ୱରଙ୍କ ରୂପ, ଗୁଣ, କର୍ମ ଓ ସ୍ୱଭାବ ସମ୍ପର୍କରେ କୁରଆନ, ବେଦ, ଉପନିଷଦ, ବାଇବଲ, ଜେନ୍ଦାଭେସ୍ତା, ଗୁରୁଗ୍ରନ୍ଥ ସାହେବ ଆଦି ଗ୍ରନ୍ଥମାନଙ୍କରେ ପ୍ରାୟ ସମାନ କଥା କୁହାଯାଇଛି । ଏଠାରେ ଆମେ ବେଦ ଓ ଉପନିଷଦର ଶିକ୍ଷା ସହ କୁରଆନର ସାମଞ୍ଜସ୍ୟ ସମ୍ପର୍କରେ ଆଲୋଚନା କରିବା ।

ବେଦ ସନାତନ ଧର୍ମର ମୁଖ୍ୟ ଗ୍ରନ୍ଥ । ଏହା ବିଶ୍ୱର ଅତି ପ୍ରାଚୀନ ଧର୍ମଗ୍ରନ୍ଥ । ବେଦର ଶାବ୍ଦିକ ଅର୍ଥ ଜ୍ଞାନ । ସହସ୍ର ବର୍ଷ ପୂର୍ବେ ମାନବଜାତିର ମାର୍ଗଦର୍ଶନ କରି ମହର୍ଷି ଅଗ୍ନି, ବାୟୁ, ଅଙ୍ଗୀରା ଆଦି ଶତାଧିକ ଋଷିମାନଙ୍କ ଅନ୍ତରରେ ଈଶ୍ୱର ଯେଉଁ ଜ୍ଞାନ ପ୍ରକଟ କରିଥିଲେ ତା'ର ସଂକଳନକୁ ବେଦ କୁହାଯାଏ । ଋଗ, ଯଜୁଃ, ସାମ, ଅଥର୍ବ—ଏହି ଚାରିଗୋଟି ବେଦ ଅଛି । ପୂର୍ବକାଳରେ ବେଦକୁ ଶୁଣି ଶୁଣି ମନେ ରଖାଯାଉଥିଲା । ତେଣୁ ଏହାକୁ ଶ୍ରୁତି ମଧ୍ୟ କୁହାଯାଏ । ବେଦ ହିଁ ବୈଦିକ ଆର୍ଯ୍ୟମାନଙ୍କର ଜୀବନଦର୍ଶନ ଥିଲା । ବେଦରୁ ଉପନିଷଦର ସୃଷ୍ଟି । ବେଦର ଅନ୍ତ ବା ସାର ବୋଲି ଏହାକୁ ବେଦାନ୍ତ ମଧ୍ୟ କୁହାଯାଏ । ମହାମତି ଆର୍ଯ୍ୟ ଋଷିମାନେ ବେଦଜ୍ଞାନକୁ ସରଳ କରି ଉପନିଷଦ ମାଧ୍ୟମରେ ରଖିଯାଇଛନ୍ତି ।

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ମାନବଜଗତର ମାର୍ଗଦର୍ଶନ କରି ମହାମାନ୍ୟ ମୁହମ୍ମଦଙ୍କ ଅନ୍ତରରେ ଈଶ୍ୱର ଯେଉଁ ଦୈବବାଣୀ ପ୍ରକଟ କଲେ ଏହାର ସଂକଳନକୁ କୁରଆନ କୁହାଯାଏ । କୁରଆନର ଶାବ୍ଦିକ ଅର୍ଥ ପାଠ୍ୟ । ୨୩ ବର୍ଷ ଧରି ଏହି ଦୈବବାଣୀ ଆରବୀ ଭାଷାରେ ପ୍ରକଟ ହୋଇଥିଲା । କୁରଆନ ଇସଲାମର ମୁଖ୍ୟ ଧର୍ମଗ୍ରନ୍ଥ । ଲିଖିତ ରୂପେ ରହିଥିବା ସତ୍ତ୍ୱେ, କୁରଆନ ବିଶ୍ୱର ଲକ୍ଷ ଲକ୍ଷ ଭକ୍ତଙ୍କ ସ୍ମୃତିରେ ରହିଛି ।

ବେଦ ଓ କୁରଆନ ଯେ ବ୍ରହ୍ମବାଣୀ ଏବଂ ଉଭୟ ଦୈବବାଣୀ ମାଧ୍ୟମରେ ପ୍ରକଟିତ ବୋଲି ଉଭୟ ଧର୍ମରେ ବିଶ୍ୱାସ ରହିଛି । ଯେପରି ବେଦର କୌଣସି ଋଷି ନିଜକୁ ବେଦମନ୍ତ୍ରର ସ୍ରଷ୍ଟା ବୋଲି କହିନାହାନ୍ତି, ସେହିପରି କୁରଆନର ଋଷି ମହାମାନ୍ୟ ମୁହମ୍ମଦ ନିଜକୁ କୁରଆନର ସ୍ରଷ୍ଟା ବୋଲି କହିନାହାନ୍ତି । ଭାଷାର ପ୍ରଭେଦ ସତ୍ତ୍ୱେ ଇସଲାମ ଓ ସନାତନ ଧର୍ମଶାସ୍ତ୍ରରେ ବ୍ରହ୍ମତତ୍ତ୍ୱର ଅପୂର୍ବ ସାମଞ୍ଜସ୍ୟ ଦେଖିବାକୁ ମିଳେ ।

ନିଜ ସ୍ରଷ୍ଟାଙ୍କୁ ଜାଣିବା ମଣିଷର ପ୍ରଥମ କର୍ତ୍ତବ୍ୟ । ତାଙ୍କୁ ଜାଣିବା ପାଇଁ ମଣିଷର ସାଧାରଣଜ୍ଞାନ ଯଥେଷ୍ଟ, କାରଣ ତାଙ୍କୁ ଉପଲବ୍ଧି କରିବା ଲାଗି ସମସ୍ତଙ୍କ ହୃଦୟରେ ମୂଳଶକ୍ତି ନିହିତ ଥାଏ । ତେଣୁ ଦିବ୍ୟଗ୍ରନ୍ଥରେ ସର୍ବପ୍ରଥମେ ମଣିଷକୁ ବ୍ରହ୍ମବିଦ୍ୟାର ଶିକ୍ଷା ଦିଆଯାଇଥାଏ । ଏହା ଈଶ୍ୱରଙ୍କୁ ଜାଣିବାର, ଚିହ୍ନିବାର ଏବଂ ପାଇବାର ବିଦ୍ୟା ।

## ସୃଷ୍ଟି, ସ୍ଥିତି ଓ ବିଲୟର କାରଣ :

ବ୍ରହ୍ମଙ୍କ ପରିଚୟ ଦେଇ ଉପନିଷଦ କୁହନ୍ତି—

ଯତୋ ବା ଇମାନି ଭୂତାନି ଜାୟନ୍ତେ ଯେନ ଜାତାନି ଜୀବନ୍ତି
ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି ତଦ୍ ବିଜିଜ୍ଞାସସ୍ୱ ତଦ୍ ବ୍ରହ୍ମେତି ।[୧]
(ତୈତ୍ତିରୀୟ-୩/୧)

ଅର୍ଥାତ୍ ସକଳ ପ୍ରାଣୀଙ୍କ ଜନ୍ମ ଯାହାଙ୍କଠାରୁ, ସମସ୍ତ ପ୍ରାଣୀ ଯାହାଙ୍କ ଦ୍ୱାରା ଜୀବନଧାରଣ କରିଥାଆନ୍ତି ଏବଂ ଶେଷରେ ଯାହାଠାରେ ଲୀନ ହୋଇ ଥାଆନ୍ତ, ତାହାଙ୍କୁ ତୁମେ ଭଲ ଭାବରେ ଜାଣିବା ପାଇଁ ଇଚ୍ଛା କର । ସେଇ ହେଉଛନ୍ତି 'ବ୍ରହ୍ମ' । ବେଦ ତାଙ୍କ ପରିଚୟ ପ୍ରଦାନ କରି କୁହନ୍ତି—

ଯୋ ମାରୟତି ପ୍ରାଣୟତି ଯସ୍ମାତ୍ ପ୍ରାଣନ୍ତି ଭୁବନାନି ବିଶ୍ୱାଃ ।[୨]
(ଅଥର୍ବବେଦ- ୧୩.୩.୩)

ଅର୍ଥାତ୍, ଈଶ୍ୱର ସେହି ଯିଏ ମୃତ୍ୟୁ ଦିଅନ୍ତି, ପ୍ରାଣସଞ୍ଚାର କରନ୍ତି ଏବଂ ଯାହାଙ୍କ କୃପାରୁ ସବୁ ଜୀବ ଜୀବିତ ରୁହନ୍ତି । କୁରଆନ ଈଶ୍ୱରଙ୍କର ଅବିକଳ ସମାନ ପରିଚୟ ଦେଇ କହେ—

اَللّٰهُ الَّذِىْ خَلَقَكُمْ ثُمَّ رَزَقَكُمْ ثُمَّ يُمِيْتُكُمْ ثُمَّ يُحْيِيْكُمْ

ଅଲ୍ଲାହୁଲ୍-ଲଜୀ ଖଲକକୁମ୍, ସୁମ୍ମା ରଜକକୁମ୍,
ସୁମ୍ମା ୟୁମିତୁକୁମ୍, ସୁମ୍ମା ୟୁହ୍‌ୟିକୁମ୍ ।(କୁରଆନ ୩୦/୪୦)

"ଅଲ୍ଲାହ୍ ସେହି, ଯିଏ ତୁମକୁ ସୃଷ୍ଟି କଲେ, ତୁମକୁ ଆହାର ଦେଲେ, ପୁଣି ସେ ତୁମକୁ ମୃତ୍ୟୁ ଦେବେ ଏବଂ ପୁଣି ପୁନର୍ଜୀବିତ କରିବେ ।"

---

(୧) यतो वा इमानि भूतानि जायन्ते येन जातानि जीवन्ति
यत्प्रयन्त्यभिसंविशन्ति तद्विजिज्ञासस्व तद् ब्रह्मेति ।
(तैत्तिरीयोपनिषद ३/१)

(୨) यो मारयति प्राणयति यस्मात प्राणन्ति भुवनानि विश्वा: ।(अथर्व-१३.३.३)

He who takes life away, he who bestows it; from whom comes breath to every living creature, This God, etc. (Atharva Veda, by Ralph T.H. Griffith, [1895])

ବେଦ ଓ ବେଦାନ୍ତ ସହ କୁରଆନର ତୁଳନା କଲେ ସ୍ପଷ୍ଟ ଜଣାଯାଏ ଯେ ଉଭୟ ଗ୍ରନ୍ଥ ଜଣେ ନିର୍ଦ୍ଦିଷ୍ଟ ସତ୍ତାଙ୍କୁ ବ୍ରହ୍ମ ବା ଅଲ୍ଲାହ ବୋଲି କହୁଛନ୍ତି ଯିଏ କି ଜଗତର ଉତ୍ପତ୍ତି, ସ୍ଥିତି ଓ ବିଲୟର କାରଣ ଅଟନ୍ତି ।

**ସର୍ବଲୋକେଶ୍ୱର**

ବ୍ରହ୍ମଙ୍କୁ ସନାତନ ଧର୍ମରେ ସର୍ବଲୋକେଶ୍ୱର କୁହାଯାଏ, କାରଣ ସେ କେବଳ ମର୍ତ୍ତ୍ୟଲୋକ ବା ସ୍ୱର୍ଗଲୋକର ନୁହଁନ୍ତି, ବରଂ ସମସ୍ତ ଲୋକର ସ୍ୱାମୀ । ସୁତରାଂ ଉପନିଷଦରେ କୁହାଯାଇଛି—

ଯୋ ଯୋନିଂ ଯୋନିମଧିତିଷ୍ଠତ୍ୟେକୋ
ବିଶ୍ୱାନି ରୂପାଣି ଯୋନୀଶ୍ଚ ସର୍ବାଃ ।(୩) (ଶ୍ୱେତା-୫/୨)

ଅର୍ଥାତ୍, ବିଭିନ୍ନ ଯୋନି ଉପରେ କେବଳ ଏକମାତ୍ର ତାଙ୍କରି ପ୍ରଭୁତ୍ୱ ରହିଛି ଏବଂ ସୃଷ୍ଟିକୁ ସେ ନିୟନ୍ତ୍ରଣ କରନ୍ତି । ଅନ୍ୟ ଏକ ସ୍ଥାନରେ ତାଙ୍କୁ ସର୍ବେଶ୍ୱର ବୋଲି କୁହାଯାଇଛି—

ଏଷ ସର୍ବେଶ୍ୱର ଏଷ ସର୍ବଜ୍ଞ ଏଷୋଽନ୍ତର୍ଯ୍ୟାମ୍ୟେଷ ଯୋନିଃ
ସର୍ବସ୍ୟ ପ୍ରଭାବାପ୍ୟୟୋ ହି ଭୂତାନାମ୍ ।(୪) (ମାଣ୍ଡୁକ୍ୟ-୬)

ବେଦ କୁହନ୍ତି—'ବିଶ୍ୱସ୍ୟ ଭୁବନସ୍ୟ ରାଜା ।' (ଋଗ୍-୫.୮୫.୩)

ଅର୍ଥାତ୍ ସେ ସମଗ୍ର ସଂସାରର ଅଧିପତି ଅଟନ୍ତି ।

---

(୩) यो योनिं योनिमधितिष्ठत्येको
विश्वानि रूपाणि योनीश्च सर्वा: ।

He alone presides over nature in all aspects and controls every form and every cause of production. (Sweta 5/2)

(୪) एष सर्वेश्वर एषं सर्वज्ञ एषोऽन्तर्याम्येष योनि:
सर्वस्य प्रभावाप्ययौ हि भूतानाम् ।

(He is the Lord of all, the omniscient, the Controller and indweller of all, the origin and dissolution of all beings and the cause of all (existence). (Mandukya/6)

କୁରଆନ ମଧ୍ୟ ତାଙ୍କୁ ସର୍ବଲୋକେଶ୍ୱର ବୋଲି ବର୍ଣ୍ଣନା କରି କହିଛି—

اَلْحَمْدُ لِلّٰهِ رَبِّ الْعٰلَمِيْنَ ۝

ଅଲ୍-ହମ୍‌ଦୁ ଲିଲ୍ଲାହି ରବ୍-ବିଲ୍ ଆଲମି-ନ୍।

"ସର୍ବଲୋକେଶ୍ୱର ଅଲ୍ଲାହ ହିଁ ସକଳ ସ୍ତୁତିର ଯୋଗ୍ୟ ।"

(କୁରଆନ-୧/୧)

## ବ୍ରହ୍ମ ଏକ

ବ୍ରହ୍ମ ବା ଈଶ୍ୱରଙ୍କ ସଂଖ୍ୟା ସମ୍ପର୍କରେ ଦିବ୍ୟଗ୍ରନ୍ଥଗୁଡ଼ିକରେ ମତଭେଦ ନାହିଁ। ବେଦ ଖୁବ ପରିଷ୍କାର ଭାବରେ କୁହନ୍ତି—

ସଃ ଏକ ଏବ ଏକକୃଦେକ ଏବ ।[୫] (ଅଥର୍ବ-୧/୫୨/୧୪)

ଅର୍ଥାତ୍ ଈଶ୍ୱର ଏକ, ଅଦ୍ୱିତୀୟ ଓ ଅମର ଅଟନ୍ତି । ଅନ୍ୟ ଏକ ସ୍ଥାନରେ ବେଦ କୁହନ୍ତି—

ନଦ୍ୱିତୀୟୋ ନ ତୃତୀୟଶ୍ଚତୁର୍ଥୋ ନାପ୍ୟୁଚ୍ୟତେ।
ନ ପଞ୍ଚମୋ ନ ଷଷ୍ଠଃ ସପ୍ତମୋ ନାପ୍ୟୁଚ୍ୟତେ।
ନାଷ୍ଟମୋ ନ ନବମୋ ଦଶମୋ ନାପ୍ୟୁଚ୍ୟତେ।
ସ ଏକ ଏବ ଏକକୃଦେକ ଏବ ॥

(ଅଥର୍ବ ବେଦ-୧୩.୪.୧୬-୨୦)

ଅର୍ଥାତ୍, ଈଶ୍ୱର ଦୁଇ ବା ତିନି ବା ଚାରି ବା ପାଞ୍ଚ ବା ଛଅ ବା ସାତ ବା ଆଠ ବା ନଅ ବା ଦଶ ନୁହନ୍ତି । ସେ ଏକ ଓ ଅଦ୍ୱିତୀୟ ଅଟନ୍ତି । ପୁନଶ୍ଚ ଉପନିଷଦ କୁହନ୍ତି—

ଏକୋ ହି ରୁଦ୍ରୋ ନ ଦ୍ୱିତୀୟାୟ ତସ୍ଥୁର୍ଯ୍ୟ
ଇମାଁଲ୍ଲୋକାନୀଶତ ଈଶନୀଭିଃ ।[୬] (ଶ୍ୱେତା-୩/୨)

---

(୫) स एक एव एककृदेक एव । (अथर्व-१/५२/१४)

(୬) एको हि रुद्रो न द्वितीयाय तस्थुर्य, इमाँल्लोकानीशत ईशनीभिः ।

He who protects and controls the worlds by His own powers, He–Rudra– is indeed one only. There is no one besides Him who can make Him the second. (Sweta-3/2)

ଅର୍ଥାତ୍, ଯିଏ ନିଜ ଶକ୍ତି ବଳରେ ସକଳ ଜଗତର ନିୟନ୍ତ୍ରଣ ଓ ରକ୍ଷା କରନ୍ତି, ସେ ରୁଦ୍ର ମାତ୍ର ଜଣେ । ତାଙ୍କ ବ୍ୟତୀତ ଦ୍ୱିତୀୟ ଈଶ୍ୱର କେହି ନାହାନ୍ତି । ସେହିପରି ଛାନ୍ଦୋଗ୍ୟ ଉପନିଷଦରେ କୁହାଯାଇଛି –

**ଏକମେବଦ୍ୱିତୀୟମ୍** । (ଛାନ୍ଦୋଗ୍ୟ-୬/୨/୧)

ଅର୍ଥାତ୍, ଈଶ୍ୱର ଏକ ଅଦ୍ୱିତୀୟ ଅଟନ୍ତି।

ସମାନ କଥା କୁରଆନ କହେ –

قُلْ هُوَ اللّٰهُ اَحَدٌ ۚ

କୁଲ୍ ହୁ ଅଲ୍ଲାହୁ ଅହଦ୍।

ଅର୍ଥାତ୍ 'କହିଦିଅ, ସେ ଅଲ୍ଲାହ୍ ଏକ ଅଟନ୍ତି ।'
(କୁରଆନ-୧୧୨/୧)

ଆଚାର୍ଯ୍ୟ ବିନୋବା ତାଙ୍କ ପୁସ୍ତକ 'କୁରଆନ ସାର'ରେ କହନ୍ତି ଯେ ସଂପୂର୍ଣ ବୈଦିକ ଭକ୍ତିମାର୍ଗ ଏକ ଈଶ୍ୱରଙ୍କ ନିଷ୍ଠା ଉପରେ ଆଧାରିତ । ନିଜ ଉକ୍ତିର ପ୍ରମାଣ ସ୍ୱରୂପ ସେ ଶ୍ୱେତାଶ୍ୱତରୋପନିଷଦରୁ ନିମ୍ନ ଶ୍ଳୋକମାନ ଉଦ୍ଧାର କରିଛନ୍ତି —

୧. 'କାଳାତ୍ମ୍ୟୁକ୍ତାନି ଅଧିତିଷ୍ଠତ୍ୟେକଃ (୧.୩)
୨. ଈଶତେ ଦେବ ଏକଃ (୧.୧୦)
୩. ଏଷ ହ ଦେବଃ ପ୍ରଦିଶୋଽନୁ ସର୍ବାଃ (୨.୧୬)
୪. ଯୋ ଦେବୋ ଅଗ୍ନୌୟୋ ଅପସୁ (୨.୧୭)
୫. ଯ ଏକୋ ଜାଲବାନ୍ (୩.୧)
୬. ଏକୋହି ରୁଦ୍ରୋ ନ ଦ୍ୱିତୀୟାୟ ତସ୍ଥୁଃ (୩.୧)
୭. ଦ୍ୟାବାଭୂମୀ ଜନୟନ୍ ଦେବ ଏକଃ (୩.୩)
୮. ଦିବି ତିଷ୍ଠତ୍ୟେକଃ (୩.୯)
୯. ଯ ଏକୋ ବର୍ଣ୍ଣୋ ବହୁଧା ଶକ୍ତି ଯୋଗାତ୍ (୪.୧)
୧୦. ଯୋ ଯୋନିଂ ଯୋନିମ୍ ଅଧିତିଷ୍ଠତ୍ୟେକଃ (୪.୧୧)

୧୧. ସ କାରଣଂ କରଣାଧିପାଧୀପୋ,
ନ ଚାସ୍ୟ କଶ୍ଚିତ୍ ଜନିତା ନ ଚାଧିପଃ (୬.୯)
୧୨. ସ୍ୱଭାବତୋ ଦେବ ଏକଃ ସ୍ୱମାବୃଣୋତ୍ (୬.୧୦)
୧୩. ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ (୬.୧୧)
୧୪. ଏକୋ ବଶୀ ନିଷ୍କ୍ରିୟାଣାଂ ବହୂନାମ୍ (୬.୧୩)
୧୫. ଏକୋ ବହୂନାଂ ଯୋ ବିଦ୍ୟାତି କାମାନ୍ (୬.୧୩)
୧୬. ଏକୋ ହଂସୋ ଭୂବନସ୍ୟାସ୍ୟ ମଧ୍ୟେ (୬.୧୫)

## ବ୍ରହ୍ମସୂତ୍ର

ସନାତନ ଧର୍ମରେ ଈଶ୍ୱରଙ୍କୁ ଜାଣିବାର ପ୍ରଥମ ସୂତ୍ର ହେଉଛି ବେଦାନ୍ତର ବ୍ରହ୍ମସୂତ୍ର । ଏହା ବୈଦିକ ଧର୍ମର ମୂଳମନ୍ତ୍ର—

**ଏକଂ ବ୍ରହ୍ମ ଦ୍ୱିତୀୟୋ ନାସ୍ତି ।**[୭]

ଅର୍ଥାତ୍ ଈଶ୍ୱର ଏକ, ଦ୍ୱିତୀୟ ନାହାନ୍ତି ।

ସମସ୍ତଙ୍କ ମାଲିକ ଜଣେ । ଏହାଠୁ ବଳି ସତ୍ୟ ସଂସାରରେ ଆଉ କ'ଣ ଅଛି ? ଧରିତ୍ରୀ, ଆକାଶ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର, ଜୀବଜନ୍ତୁ, ମଣିଷ ବା ଦେବତା—ଏମାନଙ୍କ ମଧ୍ୟରୁ କାହାକୁ ଏକାଧିକ ଈଶ୍ୱର ସୃଷ୍ଟି କରିଛନ୍ତି ? ପ୍ରାଣୀଙ୍କ ମଧ୍ୟରେ କିଏ ଅଛି ଯିଏକି ଜଣେ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାରି କୃପା ବଳରେ ଜୀବିତ ରହିଛି ? ଏମାନଙ୍କ ମଧ୍ୟରେ କିଏ ଅଛି ଯାହାକୁ ଈଶ୍ୱର ବିନାଶ କରିବାକୁ ଚାହିଁଲେ ସେ ବଞ୍ଚିଯାଇ ପାରିବ ? ବିଶ୍ୱବ୍ରହ୍ମାଣ୍ଡର ଜଣେ ହିଁ ଅଧୀଶ୍ୱର । ଏହା ହିଁ ସଂସାରର ସବୁଠାରୁ ବଡ଼ ସତ୍ୟ । ଏଥିପ୍ରତି ବିଶ୍ୱାସ ରଖିବା ସଦ୍‌ବିଶ୍ୱାସ ଏବଂ ମହାପୁଣ୍ୟ । ମନୁ କୁହନ୍ତି—"ନହି ସତ୍ୟାତ୍ ପରୋଧର୍ମୋ ନାନୃତାତ୍ ପାତକଂ ପରମ୍ ।" ଅର୍ଥାତ ସତ୍ୟଠାରୁ ବଳି ଶ୍ରେଷ୍ଠ ପୁଣ୍ୟ କିଛି ନାହିଁ ଏବଂ ମିଥ୍ୟାଠାରୁ ବଳି ବଡ଼ ପାପ କିଛି ନାହିଁ ।

ଆପଣ ଏମିତି କୌଣସି ଦେଶ ଦେଖିଛନ୍ତି ଯାହାକୁ ଏକାଧିକ ରାଜା ଶାସନ କରନ୍ତି ବା ଏମିତି ବିଦ୍ୟାଳୟଟିଏ ଦେଖିଛନ୍ତି ଯେଉଁଥିରେ ଦୁଇଜଣ

(୭) एकं ब्रह्म द्वितीयो नास्ति ।

ପ୍ରଧାନ ଶିକ୍ଷକ ବା ଏକାଧିକ ପ୍ରିନସିପାଲ ଅଛନ୍ତି ? ଏମିତି କୌଣସି ସୈନ୍ୟବାହିନୀକୁ ଜାଣନ୍ତି ଯାହାର ଦୁଇଜଣ ମୁଖ୍ୟ ରହିଛନ୍ତି ବା ଏମିତି ଅନୁଷ୍ଠାନକୁ ଜାଣନ୍ତି ଯାହାର ସମାନ କ୍ଷମତାସମ୍ପନ୍ନ ଏକାଧିକ ମୁଖ୍ୟ ରହିଛନ୍ତି ? ଏକାଧିକ ମୁଖ୍ୟ ରହିଲେ ବିଶୃଙ୍ଖଳା ହେବା ସ୍ୱାଭାବିକ । ଏ ବିଶାଳ ବିଶ୍ୱ ଯେଉଁଳି ଶୃଙ୍ଖଳା ରକ୍ଷା କରୁଛି, ଏହା କେବଳ ଜଣେ ମୁଖ୍ୟ ଥିଲେ ହିଁ ସମ୍ଭବ । ତେଣୁ ପବିତ୍ର କୁରଆନ୍ ତର୍କ ବାଢ଼ିଛି—

لَوْ كَانَ فِيهِمَا آلِهَةٌ إِلَّا اللَّهُ لَفَسَدَتَا

ଲଉ କାନା ଫି-ହିମା ଆ'ଲିହତୁନ୍ ଇଲ୍ଲ-ଲ୍ଲାହୁ ଲଫସଦତା

''ଧରିତ୍ରୀ ଓ ଆକାଶରେ ଯଦି ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଈଶ୍ୱରଗଣ ମଧ୍ୟ ଥାଆନ୍ତେ, ତେବେ ସେଗୁଡ଼ିକର ଅବସ୍ଥା ବିପର୍ଯ୍ୟସ୍ତ ହୋଇପଡ଼ନ୍ତା ।'' (କୁରଆନ-୨୧/୨୨)

**ଈଶ୍ୱର ଏକ, ନାମ ଅନେକ**

ପ୍ରତ୍ୟେକ ବସ୍ତୁର ବିଭିନ୍ନ ଭାଷାରେ ବିଭିନ୍ନ ନାମ ଥାଏ । ଏଭଳି କୌଣସି ବସ୍ତୁ ବା ପ୍ରାଣୀ ନାହିଁ ଯାହାର କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଭାଷାରେ ହିଁ ନାଁ ଅଛି । ସେହିପରି ଈଶ୍ୱରଙ୍କୁ ବିଭିନ୍ନ ଭାଷାରେ ବିଭିନ୍ନ ନାମରେ ସମ୍ବୋଧନ କରାଯାଏ । ଆରବୀ ଭାଷାରେ ବ୍ରହ୍ମଙ୍କୁ 'ଅଲ୍ଲାହ୍' କୁହାଯାଏ । ଈଶ୍ୱର ବିଭିନ୍ନ ଗୁଣଯୁକ୍ତ । ତାଙ୍କର ପ୍ରତ୍ୟେକ ନାମ ତାଙ୍କର ଗୋଟିଏ ଗୋଟିଏ ଗୁଣ ପ୍ରକାଶ କରେ । ଯେହେତୁ ଈଶ୍ୱରଙ୍କର ଗୁଣ ଅନେକ, ସେଗୁଡ଼ିକୁ ପ୍ରକାଶ କରିବା ପାଇଁ ଅନେକ ନାମ ବ୍ୟବହାର ହୁଏ । ସେ ସ୍ରଷ୍ଟା ହୋଇଥିବା ହେତୁ ତାଙ୍କୁ ବ୍ରହ୍ମା, ପ୍ରଜାପିତା ବା ବିଶ୍ୱକର୍ମା କୁହାଯାଏ । ପାଳନ କରନ୍ତି ବୋଲି ତାଙ୍କୁ ବିଷ୍ଣୁ କୁହାଯାଏ, ପ୍ରଭୁ ଓ ନିୟନ୍ତକ ବୋଲି ତାଙ୍କୁ ଈଶ୍ୱର କୁହାଯାଏ, କର୍ମଫଳଦାତା ହୋଇଥିବା ହେତୁ ତାଙ୍କୁ ବିଧାତା କୁହାଯାଏ, ଲୋକମାନଙ୍କର ପ୍ରଭୁ ବୋଲି ତାଙ୍କୁ ଜନେଶ୍ୱର କୁହାଯାଏ, ସମସ୍ତ ଲୋକର ସ୍ୱାମୀ ବୋଲି ତାଙ୍କୁ ସର୍ବଲୋକେଶ୍ୱର କୁହାଯାଏ, ଜଗତକୁ ଧାରଣ କରିଥିବା ହେତୁ ତାଙ୍କୁ ଧରଣୀଧର କୁହାଯାଏ, ସଂହାରକର୍ତ୍ତା ବୋଲି ତାଙ୍କୁ ମହେଶ୍ୱର କୁହାଯାଏ ଏବଂ ଅନ୍ତର

କଥା ଜାଣନ୍ତି ବୋଲି ତାଙ୍କୁ ଅନ୍ତର୍ଯ୍ୟାମୀ କୁହାଯାଏ ଇତ୍ୟାଦି । ଏସବୁ ସେହି ଜଣେ ଈଶ୍ୱରଙ୍କର ଭିନ୍ନ ଭିନ୍ନ ନାମ । ସମାନ ଅର୍ଥବୋଧକ ଅନେକ ନାମ ଆରବୀ ଭାଷାରେ ମଧ୍ୟ ରହିଛି । କର୍ମ ଓ ଗୁଣ ଭେଦରେ ମନୁଷ୍ୟ ତାଙ୍କୁ ଅନେକ ନାମରେ ଡାକିଲେ ସୁଦ୍ଧା ସେ ଅନେକ ନୁହନ୍ତି । ଏଣୁ ବେଦରେ କୁହାଯାଇଛି—

ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି ।[୮] (ଋକ୍-୧.୧୬୪.୪୬)

ଅର୍ଥାତ୍ ଜଣେ ଈଶ୍ୱରଙ୍କୁ ବିଦ୍ୱାନ୍‌ମାନେ ବିଭିନ୍ନ ନାମରେ ଡାକନ୍ତି ।

ସମାନ କଥା କୁରଆନ ମଧ୍ୟ କହିଛି—

قُلِ ادْعُوا اللّٰهَ اَوِ ادْعُوا الرَّحْمٰنَ اَيًّا مَّا تَدْعُوْا
فَلَهُ الْاَسْمَآءُ الْحُسْنٰى

କୁଲିଦ୍ ଉଲ୍ଲାହା ଅଓ୍ୱିଦ୍-ଉର୍ ରହମାନ୍, ଅୟ୍-ୟମ୍ମା ତଦ୍‌ଉ
ଫଲହୁଲ୍ ଅସମା'-ଉଲ୍ ହୁସ୍‌ନା

"କୁହ! ଅଲ୍ଲାହ ନାମରେ ଡାକ କିମ୍ବା ଦୟାମୟ ନାମରେ, ଯେଉଁ ନାମରେ ଡାକ ନା କାହିଁକି, ତାଙ୍କର ଭଲ ଭଲ ନାମ ଅଛି ।" (କୁରଆନ ୧୭/୧୧୦)



---

(୮) एकं सद्विप्रा बहुधा वदन्ति । (ऋगवेद-१.१६४.४६)

# ଈଶ୍ୱରଙ୍କ ଗୁଣ ଓ ସ୍ୱଭାବ

ଉଭୟ ଇସଲାମ ଓ ସନାତନ ଧର୍ମର ଶିକ୍ଷା ଅନୁଯାୟୀ ଈଶ୍ୱର ଏକ ଓ ଅଭିନ୍ନ; କିନ୍ତୁ ସେ ଈଶ୍ୱର କିଏ, ଏହା ଆମେ କିପରି ଜାଣିବା ? ଦିବ୍ୟଗ୍ରନ୍ଥମାନଙ୍କରେ ଈଶ୍ୱରଙ୍କୁ ଚିହ୍ନିବାର ଯେଉଁ ସୂତ୍ର ଦିଆଯାଏ, ସେଗୁଡ଼ିକ ହେଉଛି ତାଙ୍କ ଗୁଣ, କର୍ମ ଓ ସ୍ୱଭାବର ବର୍ଣ୍ଣନା, ଯାହାଦ୍ୱାରା କିଏ ଈଶ୍ୱର ବା କିଏ ଈଶ୍ୱର ନୁହେଁ, ଏହା ଜାଣିହେବ । ନାଁ ଦ୍ୱାରା ଖୋଜିଲେ ସବୁ ଗ୍ରନ୍ଥର ଈଶ୍ୱର ଭିନ୍ନ ଭିନ୍ନ ଜଣାପଡ଼ିବେ କାରଣ ବିଭିନ୍ନ ଭାଷାରେ ତାଙ୍କୁ ଭିନ୍ନ ଭିନ୍ନ ନାମରେ ଡକାଯାଏ । ପାର୍ସି ଧର୍ମଗ୍ରନ୍ଥ ଜେନ୍ଦ୍ ଆଭେସ୍ତାରେ ଈଶ୍ୱରଙ୍କୁ 'ଆହୁରା ମଜ୍‌ଦା' ଏବଂ ହିବ୍ରୁ ବାଇବଲ୍‌ରେ 'ଇଲୋହିମ୍' କୁହାଯାଇଛି । ସଂସ୍କୃତରେ ଈଶ୍ୱରଙ୍କ ପାଇଁ 'ବ୍ରହ୍ମ' ଏବଂ ଆରବୀରେ 'ଅଲ୍ଲାହ' ଶବ୍ଦ ବ୍ୟବହାର ହୋଇଛି । ବେଦରେ 'ଅଲ୍ଲାହ' ଶବ୍ଦ ଖୋଜିଲେ ଆମେ ପାଇବା ନାହିଁ କାରଣ ବେଦର ଭାଷା ସଂସ୍କୃତ । କୁରଆନରେ 'ବ୍ରହ୍ମ' ବା 'ଈଶ୍ୱର' ଶବ୍ଦ ଖୋଜିଲେ ତାହା ମଧ୍ୟ ମିଳିବ ନାହିଁ କାରଣ କୁରଆନର ଭାଷା ଆରବୀ; କିନ୍ତୁ ସମାନ ଗୁଣଯୁକ୍ତ ସ୍ରଷ୍ଟାଙ୍କୁ ଖୋଜିଲେ ସେ ଉଭୟ ଗ୍ରନ୍ଥରେ ନିଶ୍ଚୟ ମିଳିବେ । କୌଣସି ବସ୍ତୁ ବା ପ୍ରାଣୀକୁ ତା' ଗୁଣ ଓ ସ୍ୱଭାବରୁ ଚିହ୍ନିବା ସହଜ । ଈଶ୍ୱରଙ୍କର ଗୁଣ ଓ କର୍ମରୁ ଜ୍ଞାନୀମାନେ ତାଙ୍କୁ ଜାଣନ୍ତି ଏବଂ ସ୍ରଷ୍ଟା ଓ ସୃଷ୍ଟି ମଧ୍ୟରେ ପ୍ରଭେଦ କରନ୍ତି । ଈଶ୍ୱର କେବଳ ନିଜ ସ୍ୱରୂପରେ ଅଦ୍ୱିତୀୟ ନୁହନ୍ତି, ସେ ନିଜ ଗୁଣ, କର୍ମ ଓ ସ୍ୱଭାବରେ ମଧ୍ୟ ଅଦ୍ୱିତୀୟ ଏବଂ ଅନୁପମ । ଆସନ୍ତୁ, ସନାତନ ଧର୍ମ ଓ ଇସଲାମ ଧର୍ମଗ୍ରନ୍ଥକୁ ଆଧାର କରି ସେହି ପରମ ପବିତ୍ର ସତ୍ତାଙ୍କ କେତେକ ମୁଖ୍ୟ ଗୁଣ ଓ ସ୍ୱଭାବ ସମ୍ପର୍କରେ କିଛି ଆଲୋଚନା କରିବା ।

**ଅଜନ୍ମା**

ଇସଲାମ ଓ ସନାତନ ଶାସ୍ତ୍ର ଅନୁଯାୟୀ ଈଶ୍ୱର ଜନ୍ମ ଓ ମୃତ୍ୟୁର ଊର୍ଦ୍ଧ୍ୱରେ । ସନାତନ ଧର୍ମଗ୍ରନ୍ଥଗୁଡ଼ିକରେ ପରମାତ୍ମାଙ୍କୁ ଅଜ ବା ଅଜନ୍ମା କୁହାଯାଇଛି । ଉଦାହରଣ ସ୍ୱରୂପ, ବେଦ କହନ୍ତି—'ଅଜୋ ନ କ୍ଷାଂ ଦାଧାର ପୃଥିବୀଂ ତସ୍ତମ୍ଭ ଦ୍ୟାଂ ମଂତ୍ରେଭିଃ ସତ୍ୟୈଃ ।'(ଋଗ୍‌ବେଦ-୧.୬୭.୩) ଶତପଥ ବ୍ରାହ୍ମଣରେ

କୁହାଯାଇଛି—ବ୍ରହ୍ମ ବା ଅଜଃ (ଶତପଥ-୬,୪,୪,୧୫) । ଅର୍ଥାତ ବ୍ରହ୍ମ ଅଜନ୍ମା । ସେହିପରି ଉପନିଷଦ୍ କହନ୍ତି—'ସ ବା ଏଷ ମହାନଜ ଆତ୍ମାଽଜରୋଽମରୋଽମୃତୋଽଭୟୋ ବ୍ରହ୍ମ ।'(ବୃ.ଉ.-୪.୪.୨୫) ଅର୍ଥାତ ପରମାତ୍ମା ମହାନ, ଅଜନ୍ମା, ଅଜର, ଅମର, ଅମୃତ ଓ ଅଭୟ । ଉପନିଷଦରେ କୁହାଯାଇଛି—

ଯଦାତ୍ମତତ୍ତ୍ୱେନ ତୁ ବ୍ରହ୍ମତତ୍ତ୍ୱଂ
ଦୀପୋପମେନେହ ଯୁକ୍ତଃ ପ୍ରପଶ୍ୟେତ୍
ଅଜଂ ଧ୍ରୁବଂ ସର୍ବତତ୍ତ୍ୱୈର୍ବିଶୁଦ୍ଧଂ
ଜ୍ଞାତ୍ୱା ଦେବଂ ମୁଚ୍ୟତେ ସର୍ବପାପୈଃ ।[୯] (ଶ୍ୱେତା-୨/୧୫)

ଅର୍ଥାତ୍, ଯେତେବେଳେ ଯୋଗୀ ଆତ୍ମାର ପ୍ରତ୍ୟକ୍ଷ ଜ୍ଞାନରୁ ବ୍ରହ୍ମଙ୍କ ବାସ୍ତବତାକୁ ହୃଦୟଙ୍ଗମ କରେ, ସେ ସେହି ଦିବ୍ୟସତ୍ତାଙ୍କୁ ଅଜନ୍ମା, ନିତ୍ୟ ଓ ପବିତ୍ର ଜାଣି ସକଳ ପାପରୁ ମୁକ୍ତ ହୁଏ ।

ଅବିନାଶୀ ଓ ଅନାଦି ପରମାତ୍ମା ସର୍ବବ୍ୟାପୀ ତଥା ବ୍ରହ୍ମଜ୍ଞାନୀମାନେ ତାଙ୍କୁ ନିତ୍ୟ ଓ ଜନ୍ମରହିତ ବୋଲି ଜାଣନ୍ତି ବୋଲି ବେଦାନ୍ତର ଋଷି କୁହନ୍ତି—

ବେଦାହମେତମଜରଂ ପୁରାଣଂ
ସର୍ବାତ୍ମାନଂ ସର୍ବଗତଂ ବିଭୁତ୍ୱାତ୍
ଜନ୍ମନିରୋଧଂ ପ୍ରବଦନ୍ତି ଯସ୍ୟ
ବ୍ରହ୍ମବାଦିନୋ ହି ପ୍ରବଦନ୍ତି ନିତ୍ୟତ୍ ।[୧୦] (ଶ୍ୱେତା-୩/୨୧)

---

(୯) यदात्मतत्त्वैन तु ब्रह्मतत्त्वं दीपोपमेनेह युक्तः प्रपश्येत्
अजं ध्रुवं सर्वतत्वैर्विशुद्धं ज्ञात्वा देवं मुच्यते सर्वपापैः ।

When the yogin realizes the truth of Brahman, through the perception of the truth of Atman in this body as a self luminous entity, then knowing the Divinity as unborn, eternal and free from all the modifications of prakrti, he is freed from all sins. (Sweta-2/15)

(୧୦) वेदाहमेतमजरं पुराणं सर्वात्मानं सर्वगतं विभुत्वात्
जन्मनिरोधं प्रवदन्ति यस्य ब्रूह्मवादिनो हिं प्रवदन्ति नित्यत् ।

I know this undecaying primeval Immanent self of all, who is omnipresent because of His all-pervasiveness, and whom the expounders of Brahman declare to be eternally free from birth. (Sweta 3/21)

## ପିତାମାତାବିହୀନ

ଯେହେତୁ ଈଶ୍ୱର ଜନ୍ମରହିତ, ତେଣୁ ତାଙ୍କର ବାପା ମାଆ ନାହାନ୍ତି । ସେ ସ୍ୱୟଂଜାତ । ନିଜ ଶକ୍ତି ବଳରେ ସେ ଆପେ ସୃଷ୍ଟ । ବେଦାନ୍ତ ଦର୍ଶନରେ କୁହାଯାଇଛି—"ଉତ୍ପତ୍ୟାସମ୍ଭବାତ୍" । (ବେଦାନ୍ତ ଦର୍ଶନ-୨/୨/୩୧)

ଅର୍ଥାତ୍ ପରମାତ୍ମାଙ୍କ ଜନ୍ମ ଅସମ୍ଭବ କାରଣ ତାଙ୍କର କର୍ତ୍ତା କେହି ନାହାନ୍ତି । ଏଥିପାଇଁ ତାଙ୍କୁ ସ୍ୱୟମ୍ଭୂ ମଧ୍ୟ କୁହାଯାଏ । ତେଣୁ ଉପନିଷଦ କହନ୍ତି—

ନ ଚାସ୍ୟ କଶ୍ଚିଜ୍ଜନିତା ନ ଚାଧିପଃ ।[୧୧] (ଶ୍ୱେତା-୬/୯)

ଅର୍ଥାତ୍ ତାଙ୍କର ପିତାମାତା ନାହାନ୍ତି ବା ପ୍ରଭୁ ନାହାନ୍ତି । ସେହିପରି କୁରଆନ ଏହାର ସମର୍ଥନ କରି କହିଛି—

لَمْ يَلِدْ وَلَمْ يُولَدْ

'ଲମ୍ ୟଲିଦ୍ ଓଲମ୍ ୟୁଲଦ୍'

"ତାଙ୍କଠାରୁ କେହି ଜନ୍ମ ନେଇନାହିଁ ବା ତାଙ୍କୁ କେହି ଜନ୍ମ ଦେଇନାହିଁ ।" (କୁରଆନ-୧୧୨/୪)

ଏଥିରୁ ଜଣାଯାଏ ଯେ ଈଶ୍ୱର ଜନ୍ମ ନିଅନ୍ତି ନାହିଁ ।

## ଅବିନାଶୀ

ସୃଷ୍ଟିର ପ୍ରତ୍ୟେକ ଜୀବ ଜଡ ବିନାଶଶୀଳ । ଯିଏ ଜନ୍ମ ନିଏ ତା' ମୃତ୍ୟୁ ନିଶ୍ଚିତ । ଯାହା ସୃଷ୍ଟି ହୁଏ ତା'ର ବିଳୟ ନିଶ୍ଚିତ । ଈଶ୍ୱରଙ୍କର ଗୋଟିଏ ମୁଖ୍ୟ ଗୁଣ ହେଉଛି ଯେ ସେ ସଦା ନିତ୍ୟ ଓ ସଦାଜୀବିତ । ତାଙ୍କର ବିନାଶ ନାହିଁ । ଯେଉଁଭଳି ତାଙ୍କର ଜନ୍ମ ନାହିଁ, ସେହିଭଳି ତାଙ୍କର ମୃତ୍ୟୁ ନାହିଁ । ତେଣୁ ବେଦାନ୍ତରେ ତାଙ୍କୁ 'ଅକ୍ଷର' ଅର୍ଥାତ୍ ଅବିନାଶୀ ବୋଲି ବର୍ଣ୍ଣନା କରି କୁହାଯାଇଛି—

---

(୧୧) न चास्य कश्चिज्जनिता न चाधिपः ।
He has no parent, nor is there anyone who is His lord.
(Sweta-6/9)

କ୍ଷରଂ ପ୍ରଧାନମମୃତାକ୍ଷରଂ ହରଃ
କ୍ଷରାତ୍ମାନାବୀଶତେ ଦେବଃ ଏକଃ ।[୧୨] (ଶ୍ୱେତା-୧/୧୦)

ଅର୍ଥାତ୍ ବସ୍ତୁ ନାଶଶୀଳ; କିନ୍ତୁ ଈଶ୍ୱର ଅବିନଶ୍ୱର ଓ ଅମର । କେବଳ ସେହି ଜଣେ ଈଶ୍ୱର ସକଳ ନଶ୍ୱର ବସ୍ତୁ ଓ ଜୀବାତ୍ମାଙ୍କ ଉପରେ ପ୍ରଭୁତ୍ୱ କରନ୍ତି । ବେଦାନ୍ତର ଏହି ଶିକ୍ଷାରୁ ଜଣାଯାଏ ଯେ ମୃତ୍ୟୁଭୋଗ କରିବା ଈଶ୍ୱରଙ୍କ ସ୍ୱଭାବ ନୁହେଁ । ଠିକ୍ ସେଇ କଥା କୁରଆନ କହେ—

وَتَوَكَّلْ عَلَى الْحَيِّ الَّذِي لَا يَمُوتُ

ଓ ତଓ୍ୱକ୍-କଲ୍ ଅଲ-ଲ୍ ହୟ୍-ୟିଲ୍-ଲଜୀ ଲା ୟମୁତ୍
"ଏବଂ ଭରସା ରଖ ସେହି ସଦା ଜୀବନ୍ତ ସତ୍ତାଙ୍କ ଉପରେ
ଯିଏ ମୃତ୍ୟୁଭୋଗ କରନ୍ତି ନାହିଁ ।" (କୁରଆନ-୨୫/୫୮)

### ଅନାଦି ଓ ଅନନ୍ତ

ଈଶ୍ୱର ସୃଷ୍ଟିର ଆରମ୍ଭରୁ ଥିଲେ ଏବଂ ସୃଷ୍ଟିର ବିଲୟ ପରେ ମଧ୍ୟ ରହିବେ ବୋଲି ଉଭୟ ଗ୍ରନ୍ଥରେ କୁହାଯାଇଛି । ଉପନିଷଦ କହନ୍ତି—

ଯଃ ଏକୋ ଜାଳବାନିଶତ୍ ଈଶନୀଭିଃ
ସର୍ବଲ୍ଲୋକାନୀଶତ୍ ଈଶନୀଭିଃ
ଯ ଏବୈକଃ ଉଦ୍ଭବେ ସମ୍ଭବେ ଚ
ଯ ଏତଦ୍ ବିଦୁରମୃତାସ୍ତେ ଭବନ୍ତି ।[୧୩] (ଶ୍ୱେତା-୩/୧)

---

(୧୨) क्षरं प्रधानममृताक्षरं हर: क्षरात्मानावीशते देव एक: ।

Matter is perishable, but God is imperishable and immortal. He, the only God, rules over the perishable matter and individual souls. (Sweta-1/10)

(୧୩) य एको जालवानीशत ईशनीभि:, सर्वाल्लोकानीशत ईशनीभि:
य एवैक उद्रवे सम्भबे च, य एतद् विदुरमृतास्ते भवन्ति ।

It is the self-same One who exists alone at the time of creation and dissolution of the universe, that assumes manifold powers and appears as the Divine Lord by virtue of His inscrutable power of Maya.

ଅର୍ଥାତ୍ ଯିଏ ସୃଷ୍ଟିର ଆରମ୍ଭରେ ବିଦ୍ୟମାନ ଥିଲେ ଓ ଅନ୍ତରେ ମଧ୍ୟ ରହିବେ, ସେହି ଏକମାତ୍ର ଈଶ୍ୱର ତାଙ୍କର ଅନନ୍ତ ଶକ୍ତି ଦ୍ୱାରା ସମସ୍ତ ଲୋକର ରକ୍ଷା କରନ୍ତି ଏବଂ ସେଗୁଡ଼ିକ ମଧ୍ୟରେ କାର୍ଯ୍ୟରତ ବିଭିନ୍ନ ଶକ୍ତିଗୁଡ଼ିକୁ ନିୟନ୍ତ୍ରଣ କରନ୍ତି । ଏହି ବ୍ରହ୍ମଙ୍କୁ ହୃଦୟଙ୍ଗମ କରିଥିବା ଲୋକେ ଅମର ହୁଅନ୍ତି । ସମାନ କଥା କୁରଆନ କହେ—

هُوَ الْأَوَّلُ وَالْآخِرُ وَالظَّاهِرُ وَالْبَاطِنُ

ହୁଅଲ୍ ଅଓ୍ୱଲୁ ଓଲ୍ ଆଖିରୁ ଓଜ୍-ଜାହିରୁ ଓ୍ୱଲ୍ ବାତିନ
"ସେ ହିଁ ଆଦ୍ୟ ଏବଂ ସେ ହିଁ ଅନ୍ତ ଏବଂ ସେ ପ୍ରକାଶମାନ
ଏବଂ ସେ ଅପ୍ରକାଶ୍ୟ ।" (କୁରଆନ-୫୭/୩)

**ଧାରଣକର୍ତ୍ତା**

ଈଶ୍ୱର ସର୍ବାଧାର । ସନାତନ ଧର୍ମରେ ତାଙ୍କୁ ଧରଣୀଧର ମଧ୍ୟ କୁହାଯାଏ । ସମଗ୍ର ଜଗତକୁ ସେ ଧାରଣ କରିଛନ୍ତି ବୋଲି ବେଦାନ୍ତରେ କୁହାଯାଇଛି—

ବ୍ୟକ୍ତାବ୍ୟକ୍ତଂ ଭରତେ ବିଶ୍ୱମୀଶଃ ।[୧୪] (ଶ୍ୱେତା-୧/୮)

ଅର୍ଥାତ୍ ଈଶ୍ୱର ପ୍ରକାଶ୍ୟ ଓ ଅପ୍ରକାଶ୍ୟ ଜଗତକୁ ଧାରଣ କରିଛନ୍ତି । ଏହି ତତ୍ତ୍ୱକୁ ମଧ୍ୟ କୁରଆନ ସମର୍ଥନ କରି କହେ—

تَقُومَ السَّمَاءُ وَالْأَرْضُ بِأَمْرِهِ

'ତକୁମସ୍-ସମା'-ଉ ଓ୍ୱଲ୍ ଅରଦୁ ବିଅମ୍ରିହି
"ତାଙ୍କରି ଆଜ୍ଞାରେ ଧରିତ୍ରୀ ଓ ଆକାଶ ଦଣ୍ଡାୟମାନ ରହିଛନ୍ତି ।"
(କୁରଆନ ୩୦/୨୫)

---

He it is that protects all the worlds and controls all the various forces working therein. Those who realize this Being become immortal.
(Sweta 3/1)

(୧୪) संयुक्तमेतत् क्षरमक्षरं च, व्यक्ताव्यक्तं भरते विश्वमीशः ।

The Lord supports this universe which consists of a combination of the perishable and the impersiable, the manifest and the unmanifest.
(Swetaswatar Upanishad-1/8)

## ସର୍ବଜ୍ଞ ଓ ସର୍ବଦର୍ଶୀ

ଉଭୟ ଶାସ୍ତ୍ର ଈଶ୍ୱରଙ୍କୁ ସର୍ବଜ୍ଞ ଓ ସର୍ବଦର୍ଶୀ ବୋଲି ବର୍ଣ୍ଣନା କରିଛନ୍ତି । ଜଳ, ସ୍ଥଳ ଓ ଆକାଶରେ ଏଭଳି କିଛି ନାହିଁ ବା ଏଭଳି କୌଣସି ଘଟଣା ଘଟେ ନାହିଁ ଯାହା ସେ ଜାଣିପାରନ୍ତି ନାହିଁ ବା ଦେଖିପାରନ୍ତି ନାହିଁ । ତେଣୁ ବେଦାନ୍ତରେ ତାଙ୍କୁ ବିଶ୍ୱତଶ୍ଚକ୍ଷୁ ବୋଲି କୁହାଯାଇଛି—

ବିଶ୍ୱତଶ୍ଚକ୍ଷୁରୁତ ବିଶ୍ୱତୋମୁଖୋ ବିଶ୍ୱତୋବାହୁରତ ବିଶ୍ୱତସ୍ପାତ୍
ସଂ ବାହୁଭ୍ୟାଂ ଧମତି ସଂପତତ୍ରୈର୍ଦ୍ୟାବାଭୂମି ଜନୟନ୍ ଦେବ ଏକଃ ।(୧୪)
(ଶ୍ୱେତା-୩/୩)

ଅର୍ଥାତ୍ 'ଈଶ୍ୱରଙ୍କ ଚକ୍ଷୁ, ମୁଖ, ବାହୁ ଏବଂ ପାଦ ସବୁଆଡ଼େ । ସେ ହିଁ ମଣିଷକୁ ବାହୁ, ପକ୍ଷୀକୁ ପାଦ ଓ ଡେଣା ଏବଂ ମଣିଷକୁ ପାଦ ପ୍ରଦାନ କରନ୍ତି । ସେ ଧରିତ୍ରୀ ଓ ଆକାଶର ସ୍ରଷ୍ଟା ଓ ସେଗୁଡ଼ିକର ଏକମାତ୍ର ପ୍ରକାଶକ ।' ସମାନ କଥା କୁରଆନ ମଧ୍ୟ କହିଛି—

وَلِلّٰهِ الْمَشْرِقُ وَالْمَغْرِبُ فَأَيْنَمَا تُوَلُّوا فَثَمَّ وَجْهُ اللّٰهِ

"ପୂର୍ବ ଓ ପଶ୍ଚିମ ସବୁ ଅଲ୍ଲାହଙ୍କର, ଯେଉଁ ଦିଗକୁ ତୁମେ ମୁହଁ କରିବ, ସେ ଦିଗରେ ଅଲ୍ଲାହଙ୍କ ମୁଖ ।" (କୁରଆନ-୨/୧୧୫)

କୁରଆନ ତାଙ୍କୁ ସର୍ବଦର୍ଶୀ ବୋଲି ବର୍ଣ୍ଣନା କରି କହେ—

وَهُوَ السَّمِيعُ الْبَصِيرُ

ହୁଅସ୍-ସମିଅ-ଉଲ୍ ବସି-ର୍
"ସେ ସବୁ ଶୁଣନ୍ତି, ସବୁ ଦେଖନ୍ତି।" (କୁରଆନ-୪୨/୧୧)

---

(୧୪) विश्वतश्चक्षुरुत विश्वतोमुखो विश्वतोबाहुरुत विश्वतस्पात्
सं बाहुभ्यां धमति संपतत्रैर्द्यावाभूमी जनयन् देव एकः ।

His eyes are everywhere, His faces everywhere, His arms everywhere, everywhere His feet. He it is who endows men with arms, birds with feet and wings and men likewise with feet. Having produced heaven and earth. He remains as their non—dual manifester.

(Sweta-3/3 - Swami Nikhilananda)

ପୁନଶ୍ଚ କହେ –

أَلَمْ يَعْلَمُوٓا أَنَّ اللَّهَ يَعْلَمُ سِرَّهُمْ وَنَجْوٰىهُمْ وَأَنَّ
اللَّهَ عَلَّامُ الْغُيُوبِ

''କ'ଣ ସେମାନେ ଏହା ଜାଣନ୍ତି ନାହିଁ ଯେ ଅଲ୍ଲାହ ସେମାନଙ୍କ ଗୁପ୍ତଚିନ୍ତା ଓ ଗୁପ୍ତମନ୍ତ୍ରଣା ସବୁ ଜାଣନ୍ତି ତଥା ଅଲ୍ଲାହ ସମସ୍ତ ଅଦୃଶ୍ୟ କଥା ଜାଣନ୍ତି ?'' (କୁରଆନ-୯/୭୮)

ବେଦ ଈଶ୍ୱରଙ୍କ ସର୍ବଦର୍ଶୀ ଗୁଣର ବର୍ଣ୍ଣନା କରି କୁହନ୍ତି –

ଯସ୍ତିଷ୍ଠତି ବରତି ଯଶ୍ଚ ବଜ୍ୱତି ଯୋ ନିଲାୟଂ
ଚରତି ଯଃ ପ୍ରତଂକମ।
ଦ୍ୱୌ ସଂନିଷ ଯନ୍ମନ୍ତ୍ରୟେତେ ରାଜାତଦ୍ ବେଦ
ବରୁଣସ୍ତୃତୀୟଃ ॥[୧୬] (ଅଥର୍ବବେଦ ୪/୧୬/୨)

ଅର୍ଥାତ୍, ଯିଏ ଛିଡ଼ା ହୁଏ, ଯିଏ ଚାଲେ, ଯିଏ ପ୍ରତାରଣା କରେ, ଯିଏ ଅନ୍ୟକୁ କଷ୍ଟ ଦିଏ, ଯେଉଁ ଦୁଇଜଣ ଗୁପ୍ତ ମନ୍ତ୍ରଣା କରନ୍ତି, ତୃତୀୟ ଜଣକ ଈଶ୍ୱର ସମସ୍ତଙ୍କୁ ଜାଣନ୍ତି । ଅବିକଳ ସମାନ କଥା କୁରଆନ କହିଛି—

مَا يَكُونُ مِنْ نَّجْوٰى ثَلٰثَةٍ إِلَّا هُوَ
رَابِعُهُمْ وَلَا خَمْسَةٍ إِلَّا هُوَ سَادِسُهُمْ

ତିନିଜଣ ବ୍ୟକ୍ତିଙ୍କ ଗୁପ୍ତ ମନ୍ତ୍ରଣା ବେଳେ ଚତୁର୍ଥ ଜଣକ ଅଲ୍ଲାହ ସେମାନଙ୍କ ସହିତ ଥାଆନ୍ତି ଏବଂ ପାଞ୍ଚଜଣ ଗୁପ୍ତ ପରାମର୍ଶ କଲାବେଳେ ଷଷ୍ଠ ଜଣକ ଅଲ୍ଲାହ (ସେମାନଙ୍କ ସଙ୍ଗେ) ଥାଆନ୍ତି । (କୁରଆନ-୫୮/୭)

---

(୧୬) यस्तिष्ठति वरति यश्च वज्वति यो निलायं
चरति यः पृतंकम ।
द्वौ संनिष यन्मन्त्रयेते राजातद् वेद
वरुणस्तृतीयः । (अथर्ववेद–४:१६:२)

**ଅନ୍ତର୍ଯ୍ୟାମୀ**

ଉପନିଷଦ କୁହନ୍ତି ଈଶ୍ୱର ସର୍ବେଶ୍ୱର, ସର୍ବଜ୍ଞ ଓ ଅନ୍ତର୍ଯ୍ୟାମୀ ଅଟନ୍ତି—

ଏଷ ସର୍ବେଶ୍ୱର ଏଷ ସର୍ବଜ୍ଞ ଏଷୋଽନ୍ତର୍ଯ୍ୟାମ୍ୟେଷ ଯୋନିଃ ।[୧୭]
(ମାଣ୍ଡୁକ୍ୟ-୬)

କୁରଆନ କହେ—

اِنَّ اللّٰهَ عٰلِمُ غَيْبِ السَّمٰوٰتِ وَ الْاَرْضِ ۚ اِنَّهٗ
عَلِيْمٌۢ بِذَاتِ الصُّدُوْرِ ۝

ନିଶ୍ଚିତ ରୂପେ ଅଲ୍ଲାହ ଧରିତ୍ରୀ ଓ ଆକାଶମଣ୍ଡଳର ସମସ୍ତ ଅପ୍ରକାଶ୍ୟ କଥା ଜାଣନ୍ତି, ସେ ତ ଅନ୍ତର କଥା ମଧ ଜାଣନ୍ତି ।
(କୁରଆନ-୩୫/୩୮)

ଈଶ୍ୱର ଯେ ସର୍ବଜ୍ଞ ଓ ସର୍ବଦର୍ଶୀ ଏବଂ ଅନ୍ତର୍ଯ୍ୟାମୀ, ଏହା ଉଭୟ ଶାସ୍ତ୍ର ସମାନ ଭାବରେ କହିଛନ୍ତି । ତେଣୁ, ଯିଏ ସବୁକଥା ଜାଣିପାରନ୍ତି ନାହିଁ, ଦେଖିପାରନ୍ତି ନାହିଁ ବା ପ୍ରାଣୀର ଅନ୍ତର କଥା ଜାଣିପାରନ୍ତି ନାହିଁ, ସେ ଈଶ୍ୱର ନୁହନ୍ତି ।

**ସର୍ବବ୍ୟାପୀ**

ବେଦାନ୍ତ କୁହନ୍ତି—

ସର୍ବତଃ ପାଣିପାଦଂ ତତ୍ ସର୍ବତୋଽକ୍ଷିଶିରୋମୁଖମ୍
ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥[୧୮] (ଶ୍ୱେତା-୩/୧୩)

---

(୧୭) एष सर्वेश्वर एष सर्वज्ञ एषोऽन्तर्याम्येष योनि:
सर्वस्य प्रभावाप्ययौ हि भूतानाम् ।

(He is the Lord of all, the omniscient, the Controller and indweller of all, the origin and dissolution of all beings and the cause of all (existence). (Mandukya-6)

(୧୮) सर्वत: पाणिपादं तत् सर्वतो ऽक्षिशिरोमुखम्
सर्वत: श्रुतिमल्लोके सर्वमावृत्य तिष्ठति ।१३।

With hands and feet everywhere, with eyes, heads and mouths everywhere, with ears everywhere, That exists, pervading everything in the universe. (Swet-3/13)

ଅର୍ଥାତ୍ ତାଙ୍କ ହସ୍ତ, ପାଦ, ଆଖି, ମସ୍ତକ, ମୁଖ ଓ କର୍ଣ୍ଣ ସବୁଆଡ଼େ ଏବଂ ବିଶ୍ୱବ୍ରହ୍ମାଣ୍ଡର ପ୍ରତ୍ୟେକ ବସ୍ତୁକୁ ସେ ଘେରି ରହିଛନ୍ତି ।

କୁରଆନ ମଧ୍ୟ ଈଶ୍ୱରଙ୍କ ସର୍ବବ୍ୟାପୀ ସ୍ୱଭାବର ସମର୍ଥନ କରି କହେ—

إِنَّ ٱللَّهَ وَاسِعٌ عَلِيمٌ

ଇନ୍ନଲ୍-ଲାହା ଓ୍ୱାସିଉନ୍ ଅଲିମ୍

''ବାସ୍ତବରେ ଅଲ୍ଲାହ ସର୍ବବ୍ୟାପୀ ଓ ସର୍ବଜ୍ଞ ଅଟନ୍ତି ।''
(କୁରଆନ-୨/୧୧୫)

ଅନ୍ୟ ଏକ ସ୍ଥାନରେ କୁହାଯାଇଛି—

وَسِعَ كُرْسِيُّهُ ٱلسَّمٰوٰتِ وَٱلْأَرْضَ

''ତାଙ୍କ ଆଧିପତ୍ୟ ଧରିତ୍ରୀ ଓ ଆକାଶମଣ୍ଡଳକୁ ଘେରି ରହିଛି ।''
(କୁରଆନ-୨/୨୫୫)

## ସର୍ବଶକ୍ତିମାନ

ସର୍ବଶକ୍ତିମାନ ଅର୍ଥ ଯିଏ ନିଜ ଶକ୍ତି ବଳରେ ସବୁ କିଛି କରିବାରେ ସମର୍ଥ । ଯିଏ ସୃଷ୍ଟି, ପାଳନ ଓ ସଂହାର କରିପାରନ୍ତି ଏବଂ ଜୀବକୁ ତା' କର୍ମର ଫଳ ପ୍ରଦାନ କରିପାରନ୍ତି, ତାକୁ ପୁରସ୍କୃତ କରିପାରନ୍ତି ବା ଦଣ୍ଡିତ ମଧ୍ୟ କରିପାରନ୍ତି ଏବଂ ଏଥିପାଇଁ ସେ କାହାରି ସହାୟତା ଦରକାର କରନ୍ତି ନାହିଁ, ତେଣୁ ତାଙ୍କୁ ଈଶ୍ୱର କୁହାଯାଏ । ଏଥିପାଇଁ ତାଙ୍କୁ ବିକ୍ରମୀ ଅର୍ଥାତ୍ ସର୍ବଶକ୍ତିମାନ ମଧ୍ୟ କୁହାଯାଏ । ତାଙ୍କ ଉପରେ କାହାରି କର୍ତ୍ତୃତ୍ୱ ନଥିବାରୁ ତାଙ୍କୁ ସର୍ବନିୟନ୍ତା ମଧ୍ୟ କୁହାଯାଏ । ସୃଷ୍ଟିର ସକଳ ଜୀବ, ମାନବ, ଦେବ ବା ଦାନବ— ସମସ୍ତଙ୍କର ଶକ୍ତି ସୀମିତ । କେବଳ ଈଶ୍ୱରଙ୍କର ଶକ୍ତି ଅସୀମ । ସୃଷ୍ଟି, ପାଳନ ଓ ସଂହାର କରିବାର ଅସୀମ ଶକ୍ତି । ପ୍ରତି ମୁହୂର୍ତ୍ତରେ ଏକ ସମୟରେ ସେ କୋଟି କୋଟି କାର୍ଯ୍ୟ ସମ୍ପାଦନ କରିଥାଆନ୍ତି ଏବଂ ଏଥିପାଇଁ ସେ କାହାରି ସହାୟତା ଆବଶ୍ୟକ କରନ୍ତି ନାହିଁ । ତେଣୁ ବେଦାନ୍ତରେ କୁହାଯାଇଛି—

ଏକୋ ହି ରୁଦ୍ରୋ ନ ଦ୍ୱିତୀୟାୟ ତସ୍ଥୁର୍ଯ୍ୟ
ଇମାଁଲ୍ଲୋକାନୀଶତ ଈଶନୀଭିଃ ।[୧୯] (ଶ୍ୱେତା-୩/୨)

ଅର୍ଥାତ୍ ଯିଏ ନିଜ ଶକ୍ତି ବଳରେ ସକଳ ଲୋକକୁ ନିୟନ୍ତ୍ରଣ ଓ ରକ୍ଷା କରନ୍ତି, ସେ ରୁଦ୍ର ବାସ୍ତବରେ ଏକ ଏବଂ ଅଦ୍ୱିତୀୟ । ପୁନଶ୍ଚ କୁହାଯାଇଛି—

ନାନ୍ୟୋ ହେତୁର୍ବିଦ୍ୟତ ଈଶନାୟ ।[୨୦] (ଶ୍ୱେତା-୬/୧୭)

ଅର୍ଥାତ୍ ବ୍ରହ୍ମାଣ୍ଡକୁ ଶାସନ କରିବାକୁ ଅନ୍ୟ କେହି ହେଲେ ସମର୍ଥ ନୁହେଁ । ପୁନଶ୍ଚ ଏହା ମଧ୍ୟ କୁହାଯାଇଛି—

ନ ତସ୍ୟ କଶ୍ଚିତ୍. ପତିରସ୍ତି ଲୋକେ ।[୨୧] (ଶ୍ୱେତା-୬/୯)

ଅର୍ଥାତ୍ ଜଗତରେ ତାଙ୍କର କେହି ପ୍ରଭୁ ନାହିଁ କିମ୍ବା ତାଙ୍କ ଉପରେ କାହାରି କର୍ତ୍ତୃତ୍ୱ ନାହିଁ । ଈଶ୍ୱରଙ୍କୁ ସର୍ବଶକ୍ତିମାନ୍ ବୋଲି ବର୍ଣ୍ଣନା କରି କୁରଆନରେ କୁହାଯାଇଛି—

اَللّٰهُ الَّذِىْ خَلَقَكُمْ مِّنْ ضُعْفٍ ثُمَّ جَعَلَ مِنْۢ بَعْدِ
ضُعْفٍ قُوَّةً ثُمَّ جَعَلَ مِنْۢ بَعْدِ قُوَّةٍ ضُعْفًا وَّ
شَيْبَةً ؕ يَخْلُقُ مَا يَشَآءُ ۚ وَهُوَ الْعَلِيْمُ الْقَدِيْرُ

"ଅଲ୍ଲାହ ସେଇ ଯିଏ ତୁମକୁ ଦୁର୍ବଳ କରି ସୃଷ୍ଟି କଲେ, ଦୁର୍ବଳତା ପରେ ପୁଣି ତୁମକୁ ଶକ୍ତି ଦେଲେ, ଶକ୍ତି ଦେବାପରେ ପୁଣି

---

(୧୯) एको हि रुद्रो न. द्वितीयाय तस्थुर्य इमाँल्लोकानीशत ईशनीभिः ।

He who protects and controls the worlds by His own powers, He– Rudra– is indeed one only. There is no one besides Him who can make Him the second. (Sweta-3/2)

(୨୦) नान्यो हेतुर्विद्यत ईशनाय ।

None else is there efficient to govern the world eternally. (Sweta-6/17)

(୨୧) न तस्य कश्चित् पतिरस्ति लोके ।

No one in the world is His master, nor has anybody any control over Him. (Sweta-6/9)

ତୁମକୁ ଦୁର୍ବଳତା ଓ ବାର୍ଦ୍ଧକ୍ୟ ଦେଲେ । ସେ ଯାହା ଚାହାନ୍ତି ସୃଷ୍ଟି କରନ୍ତି ଏବଂ ସେ ହିଁ ସର୍ବଜ୍ଞ ଓ ସର୍ବଶକ୍ତିମାନ୍ ।
(କୁରଆନ-୩୦/୫୪)

**ରକ୍ଷକ**

ଈଶ୍ୱର କେବଳ ସୃଷ୍ଟି ବା ପାଳନ କରନ୍ତି ନାହିଁ, ସେ ନିଜ ସୃଷ୍ଟିର ରକ୍ଷା ମଧ୍ୟ କରନ୍ତି । ଏଥିପାଇଁ ସନାତନ ଶାସ୍ତ୍ରରେ ତାଙ୍କୁ 'ଗୋପ୍ତା' ଅର୍ଥାତ୍ ରକ୍ଷକ ବୋଲି କୁହାଯାଇଛି । କୁରଆନ ଆରବୀ ଭାଷାରେ 'ହାଫିଜ' ବୋଲି କହିଛି । ପ୍ରାଣୀଙ୍କୁ ବିପଦ ଆପଦରୁ କେବଳ ସେଇ ହିଁ ରକ୍ଷା କରିଥାଆନ୍ତି । ବନ୍ୟା, ବାତ୍ୟା ଭଳି ପ୍ରାକୃତିକ ଦୁର୍ବିପାକ ହେଉ, ରୋଗ, ବ୍ୟାଧି ବା ଦୁର୍ଘଟଣା ହେଉ, ବା ଯେ କୌଣସି ସଙ୍କଟ ହେଉ, ତ୍ରାଣକର୍ତ୍ତା ସେଇ ଜଣେ । ତାଙ୍କ ବ୍ୟତୀତ କେହି ସର୍ବଶକ୍ତିମାନ ନୁହେଁ ବା ସଂକଟମୋଚନ କରିବାର ଶକ୍ତି ଅନ୍ୟ କାହାରି ନାହିଁ । ଉପନିଷଦରେ କୁହାଯାଇଛି—

ସ ଏବ କାଳେ ଭୁବନସ୍ୟ ଗୋପ୍ତା ।[୨୨] (ଶ୍ୱେତା-୪/୧୫)

ଅର୍ଥାତ୍ 'କେବଳ ସେଇ ହିଁ ଉଚିତ ସମୟରେ ସୃଷ୍ଟିର ରକ୍ଷା କରନ୍ତି । ଯିଏ ରକ୍ଷା କରିବାକୁ ଅସମର୍ଥ ବା ଯିଏ ନିଜ ସୁରକ୍ଷା ପାଇଁ ମଧ୍ୟ ଅନ୍ୟର ସହାୟତା ଲୋଡ଼ନ୍ତି, ସେ ଈଶ୍ୱର ହୋଇ ନ ପାରନ୍ତି । ଅନ୍ୟ ଏକ ସ୍ଥାନରେ କୁହାଯାଇଛି—

ଯ ଏକୋ ଜାଲବାନୀଶତ୍ ଈଶନୀଭିଃ
ସର୍ବାଁଲ୍ଲୋକାନୀଶତ୍ ଈଶନୀଭିଃ
ଯ ଏବୈକଃ ଉଦ୍‌ଭବେ ସମ୍ଭବେ ଚ
ଯ ଏତଦ୍ ବିଦୁରମୃତାସ୍ତେ ଭବନ୍ତି ।[୨୩] (ଶ୍ୱେତା-୩/୧)

---

(୨୨) स एव काले भुवनस्य गोप्ता ।
He alone is the Protector of the world at the proper time.
(Sweta 4/15)

(୨୩) य एको जालवानीशत ईशनीभिः, सर्वाँल्लोकानीशत ईशनीभिः
य एवैक उद्भवे सम्भवे च, य एतद् विदुरमृतास्ते भवन्ति ।
It is the self-same One who exists alone at the time of creation and dissolution of the universe, that assumes manifold powers and

ଅର୍ଥାତ୍ ଯିଏ ସୃଷ୍ଟିର ଆରମ୍ଭରେ ବିଦ୍ୟମାନ ଥିଲେ ଓ ଅନ୍ତରେ ମଧ୍ୟ ରହିବେ, ସେହି ଏକମାତ୍ର ଈଶ୍ୱର ତାଙ୍କର ଅନନ୍ତ ଶକ୍ତି ଦ୍ୱାରା ସମସ୍ତ ଲୋକର ରକ୍ଷା କରନ୍ତି ଏବଂ ସେଗୁଡ଼ିକ ମଧ୍ୟରେ କାର୍ଯ୍ୟରତ ବିଭିନ୍ନ ଶକ୍ତିଗୁଡ଼ିକୁ ନିୟନ୍ତ୍ରଣ କରନ୍ତି । ଏହି ବ୍ରହ୍ମଙ୍କୁ ହୃଦୟଙ୍ଗମ କରିଥିବା ଲୋକେ ଅମର ହୁଅନ୍ତି ।

କୁରଆନରେ ଅଲ୍ଲାହଙ୍କୁ ସମସ୍ତଙ୍କର ରକ୍ଷକ ବୋଲି ବର୍ଣ୍ଣନା କରାଯାଇଛି—

إِنَّ رَبِّي عَلَىٰ كُلِّ شَيْءٍ حَفِيظٌ

ଇନ୍ନା ରବ୍-ବି ଅଲା କୁଲ୍ଲି ଶୟ୍-ଇନ୍ ହଫିଜ୍
"ବାସ୍ତବରେ ମୋ ପ୍ରଭୁ ସମସ୍ତଙ୍କର ରକ୍ଷକ ଅଟନ୍ତି।"
(କୁର୍ଆନ-୧୧/୫୭)

ପୁନଶ୍ଚ କୁହାଯାଇଛି—

وَسِعَ كُرْسِيُّهُ السَّمٰوٰتِ وَ الْأَرْضَ
وَ لَا يَـُٔودُهُ حِفْظُهُمَا

"ତାଙ୍କ ଆଧିପତ୍ୟ ଧରିତ୍ରୀ ଓ ଆକାଶମଣ୍ଡଳକୁ ଘେରି ରହିଛି ଏବଂ ସେଗୁଡ଼ିକର ସୁରକ୍ଷା ତାଙ୍କ ପାଇଁ କଷ୍ଟକର ନୁହେଁ ।"
(କୁର୍ଆନ-୨/୨୫୫)

**ଅରୂପ**

ଈଶ୍ୱରଙ୍କର ଯେ ଆକାର ନାହିଁ ଏ ସମ୍ପର୍କରେ ଋଷିମୁନିମାନେ ମାନବସମାଜକୁ ସଂଦେଶ ଦେଇଥିବାର ପ୍ରମାଣ ଆମକୁ ପ୍ରାଚୀନ ଧର୍ମଶାସ୍ତ୍ରଗୁଡ଼ିକରେ ଦେଖିବାକୁ ମିଳେ । କେନୋପନିଷଦରେ ବ୍ରହ୍ମଙ୍କୁ 'ଯତ୍ ମନସା ନ ମନୁତେ ଏବଂ ଯତ୍ ଚକ୍ଷୁଷା ନ ପଶ୍ୟତି' ବୋଲି କୁହାଯାଇଛି । ଅର୍ଥାତ୍ ତାହାଙ୍କୁ ମନ ଦ୍ୱାରା ଜାଣିହେବ ନାହିଁ ବା ଆଖି ଦ୍ୱାରା ଦେଖିହେବ ନାହିଁ । ଏହି ଉପନିଷଦରେ

---

appears as the Divine Lord by virtue of His inscrutable power of Maya. He it is that protects all the worlds and controls all the various forces working therein. Those who realize this Being become immortal.
(Sweta-3/1)

ପୁଣି କୁହାଯାଇଛି—ନ ତତ୍ର ଚକ୍ଷୁର୍ଗଚ୍ଛତି, ନ ବାଗ୍ ଗଚ୍ଛତି, ନ ମନଃ... (କେନ-୧/୩) । ଅର୍ଥାତ୍ ତାଙ୍କ ନିକଟରେ ଆଖି, ବାଣୀ ବା ମନ ଆଦି ଇନ୍ଦ୍ରିୟ ପହଞ୍ଚି ପାରନ୍ତି ନାହିଁ, ସେ ଇନ୍ଦ୍ରିୟାତୀତ। ଉପନିଷଦ ସ୍ପଷ୍ଟ କୁହନ୍ତି—

ନ ସଂଦୃଶେ ତିଷ୍ଠତି ରୂପମସ୍ୟ ନ ଚକ୍ଷୁଷା ପଶ୍ୟତି କଶ୍ଚନୈନମ୍ ।[୨୪]
(ଶ୍ୱେତା-୪/୨୦)

ଅର୍ଥାତ୍ 'ତାଙ୍କ ରୂପ ଦେଖିହୁଏ ନାହିଁ, କେହି ଚକ୍ଷୁ ଦ୍ୱାରା ତାଙ୍କୁ ଦେଖେ ନାହିଁ ।' କୁରଆନ ମଧ୍ୟ ଈଶ୍ୱରଙ୍କୁ ଅରୂପ ବୋଲି ବର୍ଣ୍ଣନା କରି କହିଛି—

لَا تُدْرِكُهُ الْأَبْصَارُ

ଲା ତୁଦ୍‌ରିକୁହୁଲ୍ ଅବ୍‌ସାର୍

''ଚକ୍ଷୁ ତାଙ୍କୁ ପାଇପାରେ ନାହିଁ ।'' (କୁର୍‌ଆନ-୬/୧୦୩)

ଉପନିଷଦରେ କୁହାଯାଇଛି 'ଈଶ୍ୱର ଅଶରୀରୀ'—ଅଶରୀରଂ ଶରୀରେଷୁ (କଠ-୨/୨୨) ଏବଂ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧରହିତ—ଅଶବ୍ଦମସ୍ପର୍ଶମରୂପମବ୍ୟୟଂ ତଥାରସଂ ନିତ୍ୟମଗନ୍ଧବଚ୍ଚୟତ୍ (କଠ—୩/୧୫), ତାଙ୍କୁ ଦେଖି ହୁଏନାହିଁ; ମାତ୍ର ସେ ଧ୍ୟାନ ଦ୍ୱାରା ଅନୁଭୂତ ହୁଅନ୍ତି—ତଂ ପଶ୍ୟତେ ନିଷ୍କଳଂ ଧ୍ୟାୟମାନଃ (ମୁ. ୩.୧.୮) । ମହାଭାରତରେ ମଧ୍ୟ କୁହାଯାଇଛି ଯେ, ଈଶ୍ୱର ଶବ୍ଦ-ସ୍ପର୍ଶ-ରୂପ-ଗନ୍ଧ ରହିତ ଅବ୍ୟୟ ଓ ଶରୀରବିହୀନ ଅଟନ୍ତି—

ଅଶବ୍ଦସ୍ପର୍ଶରୂପଂ ତଦରସାଗନ୍ଧମବ୍ୟୟମ୍
ଅଶରୀରଂ ଶରୀରେଷୁ ନିରକ୍ଷେତନିରିନ୍ଦ୍ରିୟମ ॥
(ମହାଭାରତ-ଶାନ୍ତି-୨୩୯/୧୭)

କେନ ଉପନିଷଦ କହନ୍ତି ଯେ, ତାଙ୍କୁ ହିଁ ବ୍ରହ୍ମ ବୋଲି ଜାଣ ଯିଏ ଅରୂପ ବା ଆକାରବିହୀନ—

---

(୨୪) न संदृशे तिष्ठति रूपमस्य न चक्षुषा पश्यति कश्चनैनम् ।

His form does not stand within the range of the senses. No one perceives Him with the eye. (Sweta-4/20)

ଯଚ୍ଛକ୍ଷୁଷା ନ ପଶ୍ୟତି, ଯେନ ଚକ୍ଷୂଂଷି ପଶ୍ୟନ୍ତି
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।[୨୫]

(କେନ-୧/୬)

ଅର୍ଥାତ୍ ଯାହାଙ୍କୁ ଆଖି ଦ୍ୱାରା ଦେଖିହୁଏ ନାହିଁ, ମାତ୍ର ଯାହାଙ୍କ ସହାୟତାରେ ଆଖି ଦେଖିବାକୁ ସମର୍ଥ ହୁଏ, ତାଙ୍କୁ ହିଁ କେବଳ ବ୍ରହ୍ମ ବୋଲି ଜାଣ, କିନ୍ତୁ ତାହାକୁ ନୁହେଁ ଯାହାକୁ ଲୋକେ ଏଠି ଉପାସନା କରନ୍ତି ।

ପୁନଶ୍ଚ କୁହନ୍ତି—

ତତୋ ଯଦୁତ୍ତରତରଂ ତଦରୂପମନାମୟମ୍
ଯ ଏତଦ୍‌ବିଦୁରମୃତାସ୍ତେ ଭବନ୍ତି ଅଥେତରେ ଦୁଃଖମେବାପିୟନ୍ତି ।[୨୬]

(ଶ୍ୱେତା-୩/୧୦)

ଅର୍ଥାତ୍ ସେ ବିଶ୍ୱଠାରୁ ବହୁ ଦୂରରେ, ନିରାକାର ଓ ଦୁଃଖ-ଶୋକମୁକ୍ତ ଅଟନ୍ତି । ଯେଉଁମାନେ ତାଙ୍କୁ ଜାଣନ୍ତି, ସେମାନେ ଅମର ହୁଅନ୍ତି; କିନ୍ତୁ ଅନ୍ୟମାନେ ଅବଶ୍ୟ ଦୁଃଖଭୋଗ କରିଥାଆନ୍ତି ।

ଈଶ୍ୱର କିପରି—ଏହା ଚିନ୍ତା କରିହେବ ନାହିଁ ବୋଲି ଉପନିଷଦରେ ତାଙ୍କୁ 'ଅଚିନ୍ତ୍ୟ' ବୋଲି କୁହାଯାଇଛି । ତାଙ୍କର ତନୁ ନାହିଁ ବୋଲି ତାଙ୍କୁ 'ଅତନୁ' ଏବଂ ଅଙ୍ଗ ନାହିଁ ବୋଲି ତାଙ୍କୁ 'ଅନଙ୍ଗ' ମଧ୍ୟ କୁହାଯାଏ । ତାଙ୍କ ଆଖି, ପାଦ, ହାତ ସମ୍ପର୍କରେ ବର୍ଣ୍ଣନା କେବଳ ମାନବ ଭାଷାରେ ଆମ

---

(୨୫) यच्चक्षुषा न पश्यति येन चक्षूंषि पश्यन्ति
तदेव ब्रह्म त्वं विद्धि नेदं यदिदमुपासते ।

What none can see with the eyes, but by which one sees the function of the eyes, know that alone as Brahman and not this which people here worship. (Kena-1.6)

(୨୬) ततो यदुत्तरतरं तदरूपमनामयम्
य एतद्विदुरमृतास्ते भवन्ति अथेतरे दुःखमेवापियन्ति ।

That Being is far beyond this world, is formless and free from misery. They who know this become immortal. But all others have indeed to suffer misery alone. (Sweta-3/10)

ବୁଝିବା ଲାଗି କରାଯାଇଛି । ଏଗୁଡ଼ିକ ଉପମାସୂଚକ ଆଳଙ୍କାରିକ ଭାଷା; କିନ୍ତୁ ଶୁଣିବା ପାଇଁ ତାଙ୍କୁ କାନ, ଦେଖିବା ପାଇଁ ଆଖି ଦରକାର ହୁଏ ନାହିଁ। ଯେମିତି କାନ ଦ୍ୱାରା ଆମେ ଶୁଣୁ କିନ୍ତୁ ସ୍ୱୟଂ କାନକୁ ଶୁଣିବା ପାଇଁ କାନର ଦରକାର ନାହିଁ ବା ଆଖି ଦ୍ୱାରା ଆମେ ଦେଖୁ, କିନ୍ତୁ ସ୍ୱୟଂ ଆଖି ଦେଖିବା ପାଇଁ ଚକ୍ଷୁ ଦରକାର କରେନାହିଁ । ସେ ହୃଦୟରେ ଅବଶ୍ୟ ଅନୁଭୂତ ହୁଅନ୍ତି । ସୁତରାଂ ଉପନିଷଦରେ କୁହାଯାଇଛି ଯେ ସେ ପ୍ରାଣୀଙ୍କ ହୃଦୟରେ ସର୍ବଦା ବିରାଜମାନ ଅଟନ୍ତି—

ଏଷ ଦେବୋ ବିଶ୍ୱକର୍ମା ମହାତ୍ମା
ସଦା ଜନାନାଂ ହୃଦୟେ ସନ୍ନିବିଷ୍ଟଃ ।[୨୭] (ଶ୍ୱେତା-୪/୧୭)

ଯଦିଓ ମାନବ ତାଙ୍କୁ ଅନୁଭବ କରିପାରେ, କିନ୍ତୁ ସେ ପ୍ରକୃତରେ କିପରି, ତାଙ୍କୁ ଚିନ୍ତା କରିହୁଏ ନାହିଁ । ଉପନିଷଦ କୁହନ୍ତି—

ଯନ୍ମନସା ନ ମନୁତେ, ଯେନାହୁର୍ମନୋ ମତମ୍
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।[୨୮]
(କେନ-୧/୫)

ଯାହାଙ୍କୁ ମନ ଦ୍ୱାରା ଚିନ୍ତା କରିହୁଏ ନାହିଁ, ମାତ୍ର ଯାହାଙ୍କ ଦ୍ୱାରା ମନ ଚିନ୍ତା କରିବାକୁ ସମର୍ଥ, କେବଳ ତାଙ୍କୁ ହିଁ ବ୍ରହ୍ମ ବୋଲି ଜାଣ, କିନ୍ତୁ ତାହାକୁ ନୁହେଁ ଯାହାକୁ ଲୋକେ ଏଠାରେ ଉପାସନା କରନ୍ତି ।

---

(୨୭) एष देवो विश्वकर्मा महात्मा , सदा जनानां हृदये सन्निविष्टः ।

This Divinity, who created the universe and who pervades everything, always dwells in the hearts of creatures, being finitizied by emotions, intellect, will and imagination. Those who realize this become immortal. (Sweta-4/17)

(୨୮) यन्मनसा न मनुते, येनाहुर्मनो मतम्
तदेव ब्रह्म त्वं विद्धि नेदं यदिदमुपासते ।

What none can comprehend with the mind, but by which, the sages say, the mind is comprehended, know that alone as Brahman and not this which people here worship. (Kena-1/5)

## ଜ୍ୟୋତି

ଈଶ୍ୱର ଏକ ଅଦୃଶ୍ୟ ଜ୍ୟୋତିର୍ମୟ ସତ୍ତା । ମାନବ ତାଙ୍କ ସ୍ୱରୂପ ଦେଖିବାକୁ ସମର୍ଥ ନୁହେଁ । ତେଣୁ କୁରଆନରେ ଅଲ୍ଲାହଙ୍କୁ 'ବ୍ରହ୍ମାଣ୍ଡର ଜ୍ୟୋତି' ବୋଲି ବର୍ଣ୍ଣନା କରାଯାଇଛି—

اَللّٰهُ نُوۡرُ السَّمٰوٰتِ وَالۡاَرۡضِ ؕ

ଅଲ୍ଲାହୁ ନୁରୁସ୍-ସମାୱାତି ଓଲ୍ ଅରଦ

"ଅଲ୍ଲାହ୍ ଧରିତ୍ରୀ ଓ ଆକାଶମଣ୍ଡଳର ଜ୍ୟୋତି ଅଟନ୍ତି ।"
(କୁରଆନ-୨୪/୩୫)

ବେଦାନ୍ତ ମଧ୍ୟ ବ୍ରହ୍ମଙ୍କୁ ଏକ ଜ୍ୟୋତି ବୋଲି ବର୍ଣ୍ଣନା କରି କହିଛି—

ମହାନ୍ ପ୍ରଭୁର୍ବୈ ପୁରୁଷଃ ସତ୍ୱସ୍ୟେଷ ପ୍ରବର୍ତକଃ
ସୁନିର୍ମଳମିମାଂ ପ୍ରାପ୍ତିମୀଶାନୋ ଜ୍ୟୋତିରବ୍ୟୟଃ ।[୨୯]

ଅର୍ଥାତ୍ ଏହି ମହାନ ପୁରୁଷ ହିଁ ସର୍ବଶକ୍ତିମାନ ପ୍ରଭୁ । ସେ ଅମରଜ୍ୟୋତି ସକଳ ଜଗତକୁ ନିୟନ୍ତ୍ରଣ କରନ୍ତି ଏବଂ ପରମ ପବିତ୍ରାବସ୍ଥା (ମୋକ୍ଷ) ପ୍ରାପ୍ତି ପାଇଁ ଜୀବଗଣଙ୍କର ମାର୍ଗଦର୍ଶନ କରନ୍ତି । (ଶ୍ୱେତା-୨/୧୨)

## ଅନୁପମ

ଅନୁପମ ଅର୍ଥ ଯାହାର ଉପମା ନାହିଁ ବା ଯାହାକୁ କାହା ସହିତ ତୁଳନା କରାଯାଇପାରିବ ନାହିଁ । ଈଶ୍ୱର ଯେପରି ନିଜ ସ୍ୱରୂପରେ ଅଦ୍ୱିତୀୟ ଓ ଅନୁପମ, ସେହିପରି ଗୁଣ ଓ କର୍ମରେ ମଧ୍ୟ ସେ ଅଦ୍ୱିତୀୟ ଓ ଅନୁପମ । ତାଙ୍କ ପରି କେହି ଶୁଣିପାରେ ନାହିଁ, ଦେଖିପାରେ ନାହିଁ ବା କରିପାରେ ନାହିଁ । ତାଙ୍କ ପରି

---

(୨୯) महान् प्रभुर्वै पुरुष: सत्वस्यैष प्रवर्तक:
सुनिर्मलमिमां प्राप्तिमीशानो ज्योतिरव्य: ।

This Self is indeed the Mighty Lord. He is the imperishable (internal) light that controls everything. He guides the intellect of all beings so as to enable them to gain that extremely pure state (of Mukti). (Sweta-2/12)

କେହି ଜ୍ଞାନୀ ନୁହେଁ, ଶକ୍ତିମାନ ନୁହେଁ, ଅନାଦି ବା ଅନନ୍ତ ନୁହେଁ, ଅଜନ୍ମା ବା ଅବିନାଶୀ ନୁହେଁ । କେହି ତାଙ୍କର ସମତୁଲ୍ୟ ବା ତାଙ୍କଠାରୁ ଶ୍ରେଷ୍ଠ ନୁହେଁ, ସେ ମଣିଷ ହୁଅନ୍ତୁ ବା ଦେବତା, ଈଶ୍ୱରଭକ୍ତ ହୁଅନ୍ତୁ ବା ଈଶ୍ୱରଦୂତ । ଏହି ସତ୍ୟଟିକୁ ପ୍ରକାଶ କରି ବେଦ କହନ୍ତି—

ପତିର୍ବଭୂଥାସମୋ ଜନାନମେକୋ ବିଶ୍ୱସ୍ୟ ଭୁବନସ୍ୟ ରାଜା ।[୩୦]

ଅର୍ଥାତ୍ ତୁମେ ହିଁ ଜନେଶ୍ୱର ଓ ଜଗତର ଏକମାତ୍ର ଅଧୀଶ୍ୱର, ତୁମ ସମ କେହି ନାହାନ୍ତି । (ରଗ୍‌ବେଦ-୬/୩୬/୪)

ବେଦାନ୍ତରେ ସମାନ କଥା କୁହାଯାଇଛି—

ନ ତତ୍ ସ୍ମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ ।[୩୧] (ଶ୍ୱେତା-୬/୮)

ଅର୍ଥାତ୍ ତାଙ୍କ ସମ ବା ତାଙ୍କଠୁ ଶ୍ରେଷ୍ଠ କେହି ଦେଖାଯାଆନ୍ତି ନାହିଁ ।

ଯଜୁର୍ବେଦରେ କୁହାଯାଇଛି—

"ହେ ମନୁଷ୍ୟଗଣ ! ଯିଏ ଅନନ୍ତ ବ୍ରହ୍ମ, ସେ ପ୍ରକୃତି ଏବଂ ଜୀବଗଣଙ୍କଠାରୁ ପୃଥକ୍ ଅଟନ୍ତି ।" (ଯଜୁଃ-୩୩/୩୮)

କୁରଆନ ମଧ୍ୟ ଏହାର ସମର୍ଥନ କରି ତାଙ୍କୁ ଅନୁପମ ଘୋଷଣା କରିଛି—

فَلَا تَضْرِبُوْا لِلّٰهِ الْاَمْثَالَ

ଫଲା ତଦ୍‌ରିବୁ ଲିଲ୍-ଲାହିଲ୍ ଅମସାଲ୍

"ଅଲ୍ଲାହଙ୍କ ନିମିତ୍ତ ଉପମା ଗଢ଼ ନାହିଁ ।" (କୁରଆନ-୧୬/୭୪)

---

(୩୦) पतिर्बभूथासमो जनानमेको
विश्वस्य भुवनस्य राजा । (ऋगवेद–६.३६.४)
For thou art the Lord of men, without an equal of all the world thou art the only Sovran. (Rig Veda 6.36.4 - Grifth)

(୩୧) न तत्समश्चाभ्यधिकश्च दृश्यते ।
No one is seen equal or superior to Him. (Sweta-6/8)

ପୁନଶ୍ଚ କହିଛି—

لَيْسَ كَمِثْلِهِ شَيْءٌ

ଲଇସା କମିସ୍‌ଲିହି ଶଇଉନ୍

"ତାଙ୍କ ସମ କିଛି ନାହିଁ ।" (କୁରଆନ-୪୨/୧୧)

ବେଦ କହନ୍ତି—

"ହେ ମନୁଷ୍ୟଗଣ ! ଯେଉଁ ପରମେଶ୍ୱର ସମସ୍ତ ଐଶ୍ୱର୍ଯ୍ୟବାନ, କାହାରି ସଦୃଶ ନୁହନ୍ତି, ଅନନ୍ତ ବିଦ୍ୟାଯୁକ୍ତ, ଉତ୍ପନ୍ନ ହୁଅନ୍ତି ନାହିଁ, ହୋଇ ନଥିଲେ ବା ହେବେ ନାହିଁ ଏବଂ ସମସ୍ତଙ୍କଠାରୁ ବଡ଼ ଅଟନ୍ତି, ତାହାଙ୍କର ତୁମ୍ଭେମାନେ ନିରନ୍ତର ଉପାସନା କର ।"

(ଯଜୁର୍ବେଦ-୩୩/୭୯)

ସେହିପରି ଈଶ୍ୱରଙ୍କର ଅବିକଳ ସମାନ ଗୁଣ ବର୍ଣ୍ଣନା କରି କୁରଆନ କହିଛି—

قُلْ هُوَ اللّٰهُ اَحَدٌ ۝ اَللّٰهُ الصَّمَدُ ۝

لَمْ يَلِدْ ۙ وَلَمْ يُوْلَدْ ۝ وَلَمْ يَكُنْ لَّهٗ كُفُوًا اَحَدٌ ۝

କୁଲ୍ ହୁ ଅଲ୍ଲାହୁ ଅହଦ୍ । ଅଲ୍ଲାହୁସ୍-ସମଦ୍ । ଲମ୍ ଯଲିଦ୍ ଓଲମ୍ ୟୁଲଦ୍ । ଓଲମ୍ ଯକୁଲ୍-ଲହୁ କୁଫୁଅନ୍ ଅହଦ୍ ।

"କହିଦିଅ ସେ ଅଲ୍ଲାହ୍ ଏକ ଅଟନ୍ତି । ସେ କାହା ଉପରେ ନିର୍ଭରଶୀଳ ନୁହନ୍ତି । ତାଙ୍କଠାରୁ କେହି ଜନ୍ମ ନେଇନାହିଁ ଏବଂ ତାଙ୍କୁ କେହି ଜନ୍ମ ଦେଇନାହିଁ ଏବଂ କେହି ତାଙ୍କ ସମ ନୁହେଁ ।"

(କୁରଆନ-୧୧୨/୧-୪)

## ଅମୂର୍ତ୍ତ

ଯିଏ ଅରୂପ ବା ଯାହାଙ୍କର ଆକାର ନାହିଁ, ତାଙ୍କର ଛବି ବା ପ୍ରତିମା କୁଆଡୁ ଆସିବ ? ଯିଏ ଅରୂପ, ତାଙ୍କୁ ଯେଉଁ ରୂପ ଦେଲେ ମଧ୍ୟ ତାହା ଏକ କାଳ୍ପନିକ ରୂପ ହିଁ ହେବ। ବେଦାନ୍ତରେ ଈଶ୍ୱରଙ୍କୁ ଅମୂର୍ତ୍ତ ବା ପ୍ରତିମାବିହୀନ ବୋଲି କୁହାଯାଇଛି—

ଦିବ୍ୟୋ ହ୍ୟମୂର୍ତ୍ତଃ ପୁରୁଷଃ ।[୩୨] (ମୁଣ୍ଡକ-୨/୧/୨)

ଅର୍ଥାତ୍ ସେ ପରମ ଦିବ୍ୟସତ୍ତା ଆକାରବିହୀନ।

ବେଦ କହନ୍ତି ଯେ ସେହି ପ୍ରଶସ୍ତ ଯଶସ୍ୱାନ୍ ପରମେଶ୍ୱରଙ୍କର ପ୍ରତିମା ନାହିଁ—

ନ ତସ୍ୟ ପ୍ରତିମା ଅସ୍ତି ଯଶ୍ୟ ନାମ ମହଦ୍‌ଯଶଃ।[୩୩]
(ଯଜୁଃ-୩୪.୫୩, ୩୨.୩, ଶ୍ୱେତା-୪/୧୯)

କୁରଆନ ଈଶ୍ୱରଙ୍କ ପ୍ରତିମାର ପରିକଳ୍ପନାକୁ ଏକ ମିଥ୍ୟା ବୋଲି କହିଛି—

إِنَّمَا تَعْبُدُونَ مِنْ دُونِ اللَّهِ أَوْثَانًا
وَتَخْلُقُونَ إِفْكًا

"ଅଲ୍ଲାହଙ୍କ ବ୍ୟତୀତ ତୁମ୍ଭେମାନେ ପ୍ରତିମା ପୂଜା କର ଏବଂ ମିଥ୍ୟା ଗଢ।" (କୁରଆନ-୨୯/୧୭)

ଉପର୍ଯ୍ୟୁକ୍ତ ଶାସ୍ତ୍ରୀୟ ଆଲୋଚନାରୁ ଜଣାଯାଏ ଯେ ଉଭୟ ଇସଲାମ ଓ ସନାତନ ଧର୍ମର ମୌଳିକ ଶିକ୍ଷା ଅନୁଯାୟୀ ଜଗତର ସ୍ରଷ୍ଟା, ପାଳକ ଓ ବିନାଶକ ଜଣେ ଏବଂ ସେ ସର୍ବଜ୍ଞ, ସର୍ବଦର୍ଶୀ, ସର୍ବଶକ୍ତିମାନ, ସର୍ବବ୍ୟାପୀ, ରକ୍ଷକ, ଅନାଦି, ଅନନ୍ତ, ଅଜନ୍ମା, ଅବିନାଶୀ, ଅରୂପ ଓ ଅନୁପମ । ତାଙ୍କୁ ହିଁ ସନାତନ ଧର୍ମଗ୍ରନ୍ଥ 'ବ୍ରହ୍ମ' ବା 'ଈଶ୍ୱର' କହିଛନ୍ତି ଏବଂ ଇସଲାମ ଧର୍ମଗ୍ରନ୍ଥରେ ତାଙ୍କୁ 'ଅଲ୍ଲାହ୍' କୁହାଯାଇଛି । ଏହାର ଅର୍ଥ ହେଉଛି ଯେ ଯିଏ ସ୍ରଷ୍ଟା ନୁହେଁ, ପାଳନକର୍ତ୍ତା ବା ସଂହାରକର୍ତ୍ତା ନୁହେଁ, ଅନ୍ତର୍ଯ୍ୟାମୀ ନୁହେଁ, ଅଜନ୍ମା ନୁହେଁ, ଅବିନାଶୀ ନୁହେଁ, ଅରୂପ ନୁହେଁ, ଅନାଦି ବା ଅନନ୍ତ ନୁହେଁ, ଯିଏ ଜନ୍ମ ନିଏ, ଯାହାର ପିତାମାତା ଅଛନ୍ତି, ଯାହାର ରୂପ ବା ଶରୀର ଅଛି, ଯାହାର ଶକ୍ତି ସୀମିତ, ଜ୍ଞାନ ସୀମିତ, ଯିଏ ଅନ୍ୟ ଉପରେ ନିର୍ଭରଶୀଳ ବା ଯାହାର ଉପମା ଅଛି, ସେ ବ୍ରହ୍ମ ବା ଅଲ୍ଲାହ୍ ନୁହେଁ ।

---

(୩୨) दिव्यो ह्यमूर्तः पुरुषः ।
That afflugent Being is verily formless (Mundaka-2/1/2)

(୩୩) न तस्य प्रतिमा अस्ति यस्य नाम महद् यशः । (यजुर्वेद-३४/५३)

ବିଭିନ୍ନ ଧର୍ମପରମ୍ପରାରେ କିଛି ଲୋକ ସାଧୁ, ସନ୍ଥ, ମହାପୁରୁଷ ବା ଧର୍ମଦୂତଙ୍କୁ ସାକ୍ଷାତ ଈଶ୍ୱର ବୋଲି ମନେ କରି ତାଙ୍କର ଉପାସନା କରନ୍ତି । ସେବା-ଉପାସନା କେବଳ ଉପର୍ଯ୍ୟୁକ୍ତ ଗୁଣଧାରୀ ସତ୍ତାଙ୍କର ଅଧିକାର । ଏଣୁ ତାଙ୍କୁ ଜାଣିବା ମଣିଷର ପ୍ରଥମ କର୍ତ୍ତବ୍ୟ । ଆଲୋଚିତ ଦିବ୍ୟଶିକ୍ଷାକୁ ଆଧାର କରି ସୃଷ୍ଟି ଓ ସ୍ରଷ୍ଟା ମଧ୍ୟରେ ପ୍ରଭେଦ କରିବା ଖୁବ ସହଜ । ମନେ କରନ୍ତୁ କେହି ଯଦି କହେ ଯେ ମହାମାନ୍ୟ ମୁହମ୍ମଦ ଈଶ୍ୱର, ତେବେ ଆମେ ଏହା ପରୀକ୍ଷା କରିପାରିବା । ଈଶ୍ୱର ବା ଅଲ୍ଲାହ୍ ହେବାପାଇଁ ଆବଶ୍ୟକ ଗୁଣ ତାଙ୍କର ଥିଲା କି ? ପ୍ରଥମତଃ ବ୍ରହ୍ମ ବା ଅଲ୍ଲାହ୍ ଅଜନ୍ମା । ମହାମାନ୍ୟ ମୁହମ୍ମଦ ଅଜନ୍ମା ନଥିଲେ । ସେ ଜନ୍ମଗ୍ରହଣ କରିଛନ୍ତି ଏବଂ ତାଙ୍କର ପିତାମାତା ଥିଲେ । ଦ୍ୱିତୀୟତଃ, ଅଲ୍ଲାହ ଅବିନାଶୀ; କିନ୍ତୁ ମହାମାନ୍ୟ ମୁହମ୍ମଦ ଦେହତ୍ୟାଗ କରିଛନ୍ତି, ତେଣୁ ଅବିନାଶୀ ନୁହନ୍ତି । ସେହିପରି ସେ ସର୍ବଜ୍ଞ ବା ସର୍ବଦର୍ଶୀ ନଥିଲେ । ଅନ୍ତର୍ଯ୍ୟାମୀ ମଧ୍ୟ ନଥିଲେ । ତାଙ୍କ ଜ୍ଞାନ ଅସୀମ ନଥିଲା । ସେ ସର୍ବଶକ୍ତିମାନ ନ ଥିଲେ । ନିଜ କାର୍ଯ୍ୟ ପାଇଁ ଅନ୍ୟ ଉପରେ ନିର୍ଭର କରୁଥିଲେ । ଜଗତରକ୍ଷକ ନଥିଲେ । ନିଜ ଶକ୍ତି ବଳରେ ନିଜକୁ ରକ୍ଷା କରିବାର ଶକ୍ତି ମଧ୍ୟ ତାଙ୍କର ନଥିଲା । ନିଜ ରୋଗ-ବ୍ୟାଧି ବା ବିପଦ ଆପଦ ନିଜେ ଦୂର କରିବାରେ ସେ ସମର୍ଥ ନଥିଲେ, ବରଂ ଏଥିପାଇଁ ସେ ଅଲ୍ଲାହଙ୍କୁ ପ୍ରାର୍ଥନା କରୁଥିଲେ । ତାଙ୍କର ମାନବୀୟ ଦୁର୍ବଳତା ଥିଲା । ସେ ଖାଉଥିଲେ ଏବଂ ଶୋଉଥିଲେ । ଦୁଃଖ-ଶୋକମୁକ୍ତ ନଥିଲେ । ତାଙ୍କର ସର୍ବବ୍ୟାପୀ ଗୁଣ ନଥିଲା ବା ସେ ଅନାଦି ଓ ଅନନ୍ତ ନଥିଲେ । ବ୍ରହ୍ମ ବା ଅଲ୍ଲାହ ନିରାକାର, କିନ୍ତୁ ମହାମାନ୍ୟ ମୁହମ୍ମଦଙ୍କ ନିର୍ଦ୍ଦିଷ୍ଟ ରୂପ ଥିଲା । ସେ ଭକ୍ତ ଥିଲେ, ଭଗବାନ ନଥିଲେ । ସ୍ରଷ୍ଟାଙ୍କ ପ୍ରତିନିଧି ଥିଲେ କିନ୍ତୁ ସ୍ରଷ୍ଟା ନଥିଲେ । ସ୍ତୁତି କରୁଥିଲେ ମାତ୍ର ସ୍ତବ୍ୟ ନଥିଲେ । ଅଲ୍ଲାହଙ୍କ ସେବକ ବା ଉପାସକ ଥିଲେ, କିନ୍ତୁ ଉପାସ୍ୟ ନଥିଲେ । ତେଣୁ ତାଙ୍କର ମଧ୍ୟ ଉପାସନା ଧର୍ମରେ ନିଷିଦ୍ଧ । ଜଣେ ମୁସଲମାନ ମହାମାନ୍ୟ ଈଶ୍ୱରଦୂତଙ୍କୁ ଗଭୀର ପ୍ରେମ କରେ, ସମ୍ମାନ ଦିଏ, ତାଙ୍କ ଆଜ୍ଞା ନିକଟରେ ମୁଣ୍ଡ ନୁଆଁଇ ଦିଏ, କିନ୍ତୁ ତାଙ୍କର ପୂଜା ବା ଉପାସନା କରେନାହିଁ । ଉପାସନା କେବଳ ସ୍ରଷ୍ଟାଙ୍କର ଅଧିକାର । ଆସନ୍ତୁ, ଏଥର ଜାଣିବା ଯେ ଉପାସନା କାହାକୁ କୁହନ୍ତି ।



# ଉପାସନା

ଭଗବତ ପ୍ରାପ୍ତି ଆମ ସମସ୍ତଙ୍କର ଚରମ ଲକ୍ଷ୍ୟ । ଭଗବତସତ୍ତାର ଉପଲବ୍ଧି, ଇହଲୋକ ଓ ପରଲୋକର ସୁଖଶାନ୍ତି ବ୍ୟତୀତ ଅନ୍ୟ କିଛି ମଣିଷ ଜୀବନର ଅନ୍ତିମ ଲକ୍ଷ୍ୟ ନୁହେଁ । ଏଇଥିପାଇଁ ଆଦିଯୁଗରୁ ମଣିଷ ଈଶ୍ୱରଙ୍କୁ ଖୋଜି ଆସିଛି ଏବଂ ତାଙ୍କୁ ପାଇବାପାଇଁ ଉପାସନା ପୀଠ ତିଆରି କରିଛି । ଗୋଟିଏ ଗାଁ ବା ସହରରେ ସ୍କୁଲଟିଏ, ଡାକ୍ତରଖାନାଟିଏ ବା ଔଷଧ ଦୋକାନଟିଏ ନ ଥାଇପାରେ, ପାନୀୟଜଳ ପାଇଁ ନଳକୂଅଟିଏ ନ ଥାଇପାରେ, କିନ୍ତୁ ଉପାସନାପୀଠ ନଥିବା ଗାଁ ବା ସହରଟିଏ ଖୁବ କମ୍ ଦେଖିବାକୁ ମିଳିବ । ଅନେକ ପଛୁଆ ଅଞ୍ଚଳରେ ପାଣି ପାଇଁ ବହୁ ଦୂରକୁ ଯିବାକୁ ପଡ଼େ ବା ଚିକିତ୍ସା ପାଇଁ ସହରକୁ ଯିବାକୁ ପଡ଼ିଥାଏ, କିନ୍ତୁ ପୂଜା-ଉପାସନା ପାଇଁ କୁଆଡ଼େ ଯିବାକୁ ପଡ଼େନାହିଁ । ପୂଜା ମନ୍ଦିର ଗାଁ ମଧ୍ୟରେ ଥାଏ । ଅନେକ ବାସଗୃହରେ ମଧ୍ୟ ପୂଜାଘର ଥିବା ଦେଖାଯାଏ । ଏଥିରୁ ଅନୁମାନ କରନ୍ତୁ ଯେ ପାଣି ବା ଔଷଧ ଭଳି ଅତ୍ୟାବଶ୍ୟକ ବସ୍ତୁଗୁଡ଼ିକ ତୁଳନାରେ ଉପାସନା ପୀଠର ଆବଶ୍ୟକତା ମଣିଷ ପାଇଁ କେତେ ଅଧିକ ।

କାହିଁକି ମଣିଷ ପୂଜା କରେ ? ପୂଜା ଅର୍ଚ୍ଚନାର ଆବଶ୍ୟକତା ସେ କାହିଁକି ଉପଲବ୍ଧି କରେ ? ଧନୀ, ଗରିବ, ଶିକ୍ଷିତ ଅଶିକ୍ଷିତ, ଏପରିକି ରାଜା ମହାରାଜାମାନେ ମଧ୍ୟ କାହାରି ଉପାସନା କରିଥାଆନ୍ତି । କେଉଁଥିପାଇଁ ? ଏହାର କାରଣ ହେଉଛି ସେମାନଙ୍କର ଆବଶ୍ୟକତା । ମଣିଷ ବହୁତ କିଛି ଚାହେଁ; କିନ୍ତୁ ପାଏ ନାହିଁ । ସଂସାରର ଅନେକ କ୍ଷେତ୍ରରେ ସେ ଅସଫଳ ହୁଏ ଏବଂ ଭାରି ଅସହାୟ ମନେ କରେ । ସେ ଅନୁଭବ କରେ ଯେ ଜୀବନର ଗୋଟିଏ ବିଶାଳ ପରିସର ତା' ଆୟତ୍ତରେ ନାହିଁ । ତା'ର ମନେ ହୁଏ ଯେ ଜନ୍ମ, ଯୌବନ, ବାର୍ଦ୍ଧକ୍ୟ, ରୋଗ, ଦୁଃଖ ଓ ମୃତ୍ୟୁ ଆଦିକୁ କେହି ଯେପରି ତା' ଉପରେ ଲଦିଦେଇଛି । ସଫଳତା ପାଇଁ ଚେଷ୍ଟା କରି ମଧ୍ୟ ସେ ବିଫଳ ହୁଏ,

ଲାଭ ପାଇଁ ବ୍ୟବସାୟ କରି ସେ କ୍ଷତିଗ୍ରସ୍ତ ମଧ୍ୟ ହୁଏ, ସେ ପୁତ୍ର ଚାହେଁ, କିନ୍ତୁ କନ୍ୟା ଜନ୍ମ ହୁଏ, ମୃତ୍ୟୁ ଚାହେଁନାହିଁ, ଅଥଚ ମୃତ୍ୟୁ ତାକୁ ଛାଡ଼େ ନାହିଁ, ଦୁଃଖ ଯନ୍ତ୍ରଣାରୁ ତାକୁ ମୁକ୍ତି ମିଳେ ନାହିଁ ଏବଂ ବହୁ ଅଭିଳାଷ ତା'ର ପୂର୍ଣ୍ଣ ହୁଏ ନାହିଁ । କେବଳ ଏତିକି ନୁହେଁ । ବାତ୍ୟାର ତାଣ୍ଡବ ଦେଖି ତା' ହୃଦୟ ଥରିଉଠେ, ବନ୍ୟାର ବିଭୀଷିକା ତାକୁ ଆତଙ୍କିତ କରେ, ସମୁଦ୍ର ବକ୍ଷରେ ତା' ଜାହାଜ ଟଳମଳ ହୁଏ, ଘଡ଼ଘଡ଼ିର ଗର୍ଜନରେ ତା' ଛାତି ଦୋହଲି ଉଠେ, ରୋଗ ବ୍ୟାଧି ତାକୁ ବ୍ୟତିବ୍ୟସ୍ତ କରେ, ଦୁର୍ଘଟଣାର ଆଶଙ୍କା ତାକୁ ଭୟଭୀତ କରେ, ସମୁଦ୍ର ବକ୍ଷରେ ହେଉ ବା ମହାଆକାଶରେ, କୁଟୀରରେ ହେଉ ବା ପ୍ରାସାଦରେ, ପ୍ରକୃତିର ଅସୁମାରୀ ବିପଦ ପ୍ରତି ମୁହୂର୍ତ୍ତରେ. ଡେମୋକ୍ଲିସଙ୍କ ଖଡ୍‌ଗ ପରି ତା' ଉପରେ ଝୁଲୁଥାଏ । ଶଙ୍କିତ ମଣିଷଟିର ମନ ଏସବୁର କର୍ତ୍ତାଙ୍କୁ ଖୋଜେ, ଯିଏ ତା' ବିପଦ ଭଞ୍ଜନ କରିପାରିବ, ତା' ଇଚ୍ଛା ପୂରଣ କରିପାରିବ ଓ ତାକୁ ସୁଖଶାନ୍ତି ଦେଇପାରିବ । ଏହି ଅସହାୟତା ଓ ଭୟବୋଧ ତାକୁ ସ୍ରଷ୍ଟାଙ୍କ ନିକଟରେ ଶରଣାପନ୍ନ ହେବାକୁ ବାଧ୍ୟ କରିଥାଏ । ତେଣୁ ସେ ତାଙ୍କୁ ପ୍ରସନ୍ନ କରିବାର ବାଟ ଖୋଜେ । ଏ କ୍ଷେତ୍ରରେ ସାଧାରଣତଃ ସେ ନିଜ କୁଳ ପରମ୍ପରା ଅନୁସରଣ କରିଥାଏ ।

ଯୁଗଯୁଗ ଧରି ମାନବ ନିଜର କାର୍ଯ୍ୟସିଦ୍ଧି ଲାଗି ଏକ ବା ଅନେକ ଶକ୍ତିର ଉପାସନା କରିଆସିଛି । ତା'ର ସ୍ତୁତି କରିଛି, ତା' ନାମ ଜପିଛି, ଭଜନ-କୀର୍ତ୍ତନ କରିଛି, ତାକୁ ସାଷ୍ଟାଙ୍ଗ ପ୍ରଣିପାତ କରିଛି, ବିପଦରେ ତାକୁ ଡାକିଛି, ଗୁହାରୀ ଜଣାଇଛି, ପ୍ରାର୍ଥନା କରିଛି, ତା' ଶରଣ ନେଇ ସାହାଯ୍ୟ ଭିକ୍ଷା କରିଛି, ଉପାସ୍ୟର ପ୍ରସନ୍ନତା ପାଇଁ ବଳି ଓ ନୈବେଦ୍ୟ ଅର୍ପଣ କରିଛି, ଦାନ-ଦକ୍ଷିଣା ଦେଇଛି, ତା' ପାଇଁ ବ୍ରତ-ଉପବାସ କରିଛି, ତା' ଉଦ୍ଦେଶ୍ୟରେ ତୀର୍ଥଯାତ୍ରାରେ ଯାଇଛି, ନିଜ ମନସ୍କାମନା ପୂରଣ କରିବାଲାଗି ତା' ନିକଟରେ ମାନସିକ କରିଛି, ତା' ସାନ୍ନିଧ୍ୟ ଲାଭ କରିବାଲାଗି ଘର ସଂସାର ଛାଡ଼ି ଜଙ୍ଗଲ ଓ ପାହାଡ଼ରେ ବସି ତପସ୍ୟା କରିଛି, ତା' ଆଜ୍ଞା ପାଳନ କରିବାପାଇଁ କଠୋର ସାଧନା କରିଛି, କାମ, କ୍ରୋଧ, ଲୋଭ ମୋହ ଆଦି ରିପୁଗୁଡ଼ିକ ସହ ଅହରହ ସଂଘର୍ଷ କରିଛି, ଅନ୍ୟାୟ-ଅତ୍ୟାଚାରର ବିରୋଧ କରିଛି ଏବଂ ଆବଶ୍ୟକ ବେଳେ ନିଜ ପ୍ରାଣ ମଧ୍ୟ ଉତ୍ସର୍ଗ କରିଦେଇଛି । ଭକ୍ତର ଏହି କର୍ମଗୁଡ଼ିକୁ

ଉପାସନା କୁହାଯାଏ । କାହାରିକୁ ଈଶ୍ୱର ବା ତ୍ରାଣକର୍ତ୍ତା ମନେକରି ତା' ପ୍ରସନ୍ନତା ଲାଗି କରାଯାଉଥିବା ପ୍ରତ୍ୟେକ କର୍ମ ସେବା ବା ଉପାସନା । ତାହା ପୂଜା-ଅର୍ଚ୍ଚନା ହେଉ ବା ଆଜ୍ଞା ପାଳନ ହେଉ । ଆରବୀ ଭାଷାରେ ଏହାକୁ 'ଇବାଦତ୍' କୁହାଯାଏ । ବୋଧହୁଏ ଏମିତି ବ୍ୟକ୍ତି ନଥିବ ଯିଏ ନିଜ ଜୀବଦଶାରେ କାହାରି ଉପାସନା କରି ନଥିବ । କିଛି ନ କରୁଥିଲେ ମଧ୍ୟ ଅନ୍ତତଃ ବିପଦ ଆପଦରେ ତା' ମନ କାହାକୁ ଡାକିଥିବ । ଏହି କର୍ମଟି 'ପ୍ରାର୍ଥନା' ଏବଂ ଏହା ମଧ୍ୟ ଉପାସନା । ଉପାସନା କେବଳ ଜଗତକର୍ତ୍ତାଙ୍କର ଅଧିକାର ଯାହାଙ୍କୁ ବେଦ ଓ ବେଦାନ୍ତରେ 'ବ୍ରହ୍ମ' ଏବଂ କୁରଆନରେ 'ଅଲ୍ଲାହ୍' କୁହାଯାଇଛି । ଋଗବେଦରେ କୁହାଯାଇଛି—

> "ଅନନ୍ତ ପରାକ୍ରମୀ ଜଗଦୀଶ୍ୱରଙ୍କ ବିନା କେହି ମଧ୍ୟ ଏହି ବିଚିତ୍ର ଜଗତର ରଚନା, ଧାରଣ ଏବଂ ପ୍ରଳୟ କରିବାକୁ ସମର୍ଥ ହୋଇପାରନ୍ତି ନାହିଁ । ଏଣୁ ତାଙ୍କୁ ଛାଡ଼ି ଅନ୍ୟ କାହାର ଉପାସନା କେହି କରିବା ଉଚିତ ନୁହେଁ ।" (ଋଗବେଦ-୧/୧୫୪/୩)

ବେଦାନ୍ତରେ ମଧ୍ୟ ତାହାହିଁ କୁହାଯାଇଛି—

> ଯୋ ଦେବାନାମଧିପୋ
> ଯସ୍ମିନ୍‌ଲ୍ଲୋକାଃ ଅଧିଶ୍ରିତାଃ
> ଯ ଈଶେ ଅସ୍ୟ ଦ୍ୱିପଦଶ୍ଚତୁଷ୍ପଦଃ
> କସ୍ମୈ ଦେବାୟ ହବିଷା ବିଧେମ ।[୩୪] (ଶ୍ୱେତା-୪/୧୩)

ଅର୍ଥାତ୍ "ଆସ ! ଦେବଗଣଙ୍କ ପ୍ରଭୁ, ସକଳଲୋକର ଧାରଣକର୍ତ୍ତା, ଆନନ୍ଦମୟ ପରମ ଦିବ୍ୟସତ୍ତାଙ୍କ ନିକଟରେ ସମର୍ପିତ ହୋଇ ତାଙ୍କର ଉପାସନା

---

(୩୪) यो देवानामधिपो यस्मिन्ल्लोका अधिश्रिता:
य ईशे अस्य द्विपदश्चतुष्पद: कस्मै देवाय हविषा विधेम ।

Let us offer our worship with oblations to that blissful Divine Being who is the lord of the Devas, who governs the bipeds and the quadrupeds and in whom the worlds rest. (Swet-4/13) (Notes : This shows that all worship is due only to the one God, although He may be called by different names as is done in the Vedas.)

କରିବା ଯିଏ ଦ୍ୱିପଦ ଓ ଚତୁଷ୍ପଦ ପ୍ରାଣୀଙ୍କ ଉପରେ ପ୍ରଭୁତ୍ୱ କରନ୍ତି ।'' ମନ୍ତ୍ରର ଅନୁବାଦକ, ସ୍ୱାମୀ ତ୍ୟାଗୀସାନନ୍ଦ, ରାମକୃଷ୍ଣ ମଠ, ସାକାରବାଦର ସମର୍ଥକ ହୋଇଥିବା ସତ୍ତ୍ୱେ ନିଜ ଟିପ୍ପଣୀରେ ଏହା ସ୍ୱୀକାର କରନ୍ତି ଯେ ସମସ୍ତ ଉପାସନା କେବଳ ଜଣେ ଈଶ୍ୱରଙ୍କର ଅଧିକାର ।[୩୪] କୁରଆନ ସେଇକଥା କହିଛି—

إِنَّ هَٰذِهِۦٓ أُمَّتُكُمْ أُمَّةً وَٰحِدَةً وَأَنَا۠ رَبُّكُمْ
فَٱعْبُدُونِ ﴿٩٢﴾

''ତୁମ୍ଭମାନଙ୍କର ଏହି ସମ୍ପ୍ରଦାୟସମୂହ, ବାସ୍ତବରେ ଗୋଟିଏ ହିଁ ସମ୍ପ୍ରଦାୟ ଏବଂ ମୁଁ ତୁମ୍ଭମାନଙ୍କର ପାଳନକର୍ତ୍ତା । ସୁତରାଂ ତୁମ୍ଭେମାନେ ମୋର ହିଁ ଉପାସନା କର ।'' (କୁରଆନ-୨୧/୯୨)

ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ ଦ୍ୱାରା ଅଶ୍ୱିନୀ କୁମାର ଦତ୍ତଙ୍କ ପ୍ରସିଦ୍ଧ 'ଭକ୍ତିଯୋଗ' ପୁସ୍ତକର ଓଡ଼ିଆ ଅନୁବାଦ କରାଯାଇଛି । ଏହି ପୁସ୍ତକରେ ଈଶ୍ୱରଙ୍କ ଏକତ୍ୱକୁ ଅତି ସୁନ୍ଦର ଭାଷାରେ ବର୍ଣ୍ଣନା କରାଯାଇଛି—

'ନିଜର ଅଭାବ, ଆବଶ୍ୟକତା ନିଶ୍ଚିତରୂପେ ଜାଣିପାରିଲେ ଦେଖିବ, ଏହି ଅଭାବ ଓ ପ୍ରାର୍ଥନା କଥା ଜଣାଇବାପାଇଁ ଜଗତରେ ଜଣକ ଛଡ଼ା ଆଉ କେହି ନାହାନ୍ତି, ଜଣକ ଛଡ଼ା ଆଉ କାହା ପାଖରେ ହୃଦୟ ଫିଟାଇ ସବୁ କଥା କହିହେବ ନାହିଁ । ସାମାନ୍ୟ କଉଡ଼ି-କଡ଼ାକଠାରୁ ନିର୍ବାଣ ମୁକ୍ତି ପର୍ଯ୍ୟନ୍ତ ଯାହା କିଛି ଆମେ ଲୋଡ଼ୁ, ତାହାସବୁ ଜଣକ ପାଖରେ ବସି ଜଣାଇବା ଛଡ଼ା ଏ ସଂସାରରେ ଆଉ କେହି ନାହିଁ । ଏକଥା ଆମେ ଦୃଢ଼ରୂପେ ଜାଣିପାରିଲେ ସବୁକଥା ସେହି ଜଣକ ପାଖରେ କହିବାକୁ ପ୍ରବୃତ୍ତି ବଳିବ ଏବଂ ଏହି ପ୍ରବୃତ୍ତି ଦ୍ୱାରା ଜୀବନରେ ଭକ୍ତିର ମୂଳଦୁଆ ଆରମ୍ଭ ହେବ ।' (ଭକ୍ତିଯୋଗ, ଶ୍ରୀ ଗୋଦାବରୀଶ ମହାପାତ୍ର, ପୃ-୧୩୭-୧୩୮)

ବାସ୍ତବରେ କେତେ ସତ କହିଛନ୍ତି ଲେଖକ ! ଆକାଶରୁ ପାତାଳ ପର୍ଯ୍ୟନ୍ତ ସମସ୍ତେ ଅସହାୟ । ଈଶ୍ୱର ସୃଷ୍ଟି କଲେ ସୃଷ୍ଟି ହୁଅନ୍ତି, ସେ ଜୀବିତ ରଖିଲେ ଜୀବିତ ରୁହନ୍ତି ଏବଂ ମାରିଦେଲେ ମରିବାକୁ ବାଧ ହୁଅନ୍ତି । ତାଙ୍କ ବ୍ୟତୀତ ଆଉ କାହାର ଏତେ ଶକ୍ତି ଅଛି ଯେ ସେ ମଣିଷର ଆବଶ୍ୟକତା ପୂରଣ

କରିପାରିବ ? ତା' ସଂକଟ ମୋଚନ କରିପାରିବ ବା ତା'ର ଭାଗ୍ୟ ବଦଳାଇ ଦେବ ? ଈଶ୍ୱର ହେବାପାଇଁ କେତେ ଶକ୍ତି ଦରକାର, ଏହା ସୂଚାଇଦେଇ କୁରଆନ କହେ—

> ''ଆଉ ସେମାନେ ତାଙ୍କ ବ୍ୟତୀତ ଏଭଳି ଉପାସ୍ୟ ସବୁ ଗଢ଼ିଛନ୍ତି ଯିଏ କି କିଛି ସୃଷ୍ଟି କରିପାରିବେ ନାହିଁ ଏବଂ ସେମାନେ ନିଜେ ସୃଷ୍ଟି ହୋଇଛନ୍ତି, ନିଜ ଭଲ ବା ମନ୍ଦ ଉପରେ ମଧ୍ୟ ତାଙ୍କର ନିୟନ୍ତ୍ରଣ ନାହିଁ, ଅଥବା ଜୀବନ, ମୃତ୍ୟୁ ବା ପୁନର୍ଜୀବନ ଉପରେ ତାଙ୍କର କିଛି କର୍ତ୍ତୃତ୍ୱ ଅଛି ।'' (କୁରଆନ-୨୫/୩)

ସାମାନ୍ୟ ଚାଉଳଟିଏ ଗଢ଼ିବାର ସାମର୍ଥ୍ୟ ସଂସାରରେ ଅନ୍ୟ କାହାରି ନାହିଁ । ଚାଉଳଟିଏ କିଭଳି ପ୍ରସ୍ତୁତ ହୁଏ ଆପଣ କେବେ ଚିନ୍ତା କରିଛନ୍ତି ? ଗୋଟିଏ ଶସ୍ୟଦାନା ପ୍ରସ୍ତୁତ କରିବା ପାଇଁ ବ୍ରହ୍ମାଣ୍ଡର ବହୁ ମହାଶକ୍ତିଙ୍କୁ ମାସ ମାସ ଧରି ମିଳିତ ଭାବେ କାର୍ଯ୍ୟ କରିବାକୁ ପଡ଼େ । ବୀଜଟିକୁ ମାଟିରେ ପୋତି ଦେଲାପରେ ଏହି ଶକ୍ତିଗୁଡ଼ିକ ନିଜ ନିଜର କାର୍ଯ୍ୟ ଆରମ୍ଭ କରିଥାଆନ୍ତି । ମାଟି ଖାଦ୍ୟସାର ଯୋଗାଇ ଦିଏ, ସୂର୍ଯ୍ୟ ଉତ୍ତାପ ଦିଏ, ମେଘ ଜଳ ବ୍ୟବସ୍ଥା କରେ, ପୁଣି ବାୟୁ, ସୂର୍ଯ୍ୟ ଓ ସମୁଦ୍ର ମିଶି ମେଘ ସୃଷ୍ଟି କରନ୍ତି । ତା'ପରେ ମାଟି, ପାଣି, ପବନ, ସୂର୍ଯ୍ୟ, ସମୁଦ୍ର—ଏମାନେ ସମସ୍ତେ ମିଶି ମାସ ମାସ ଧରି ନିଜ କର୍ତ୍ତବ୍ୟ କରନ୍ତି, ତେବେ ଯାଇ ଶସ୍ୟ ମଞ୍ଜିଟିଏ ଗୁଳ୍ମ ରୂପ ଧାରଣ କରେ ବା ବୀଜଟିଏ ବୃକ୍ଷ ହୋଇ ଠିଆ ହୁଏ । ଏତେଗୁଡ଼ିଏ କାର୍ଯ୍ୟକ୍ରମ ପରେ ଯାଇ ଆମେ ଚାଉଳଟିଏ ବା ଫଳଟିଏ ପାଇଥାଉ । ଏହାର ଅର୍ଥ ହେଲା, ଶସ୍ୟଦାନାଟିଏ ସୃଷ୍ଟି କରିବା ପାଇଁ ସେତିକି ଶକ୍ତି ଦରକାର ଯେତିକି ଶକ୍ତି ଧରିତ୍ରୀ, ଜଳ, ସ୍ଥଳ, ଆକାଶ, ବାୟୁ, ସୂର୍ଯ୍ୟ ଓ ସମୁଦ୍ର ଆଦିଙ୍କୁ ନିୟନ୍ତ୍ରଣ କରିବା ପାଇଁ ଦରକାର । ଏଥିରୁ ସହଜରେ ବୁଝିହେବ ଯେ ମନୁଷ୍ୟର ପ୍ରତିଟି ଆବଶ୍ୟକତାକୁ ପୂରଣ କରିବା ପାଇଁ ଜଗତ ପରିଚାଳନାର ଶକ୍ତି ଦରକାର ଯାହାକି କେବଳ ଜଗତକର୍ତ୍ତାଙ୍କ ବ୍ୟତୀତ ଅନ୍ୟ କାହାରି ନାହିଁ । ପ୍ରତିଟି ଶସ୍ୟଦାନା ଓ ପ୍ରତିଟି ଜଳବିନ୍ଦୁକୁ ସେ ଆମ ପାଇଁ ପ୍ରସ୍ତୁତ କରନ୍ତି । ତେଣୁ ତାଙ୍କୁ ହିଁ ଭକ୍ତ ଡାକିବା ଉଚିତ । ସେ ଭକ୍ତବନ୍ଧୁ ଭକ୍ତର ନିକଟରେ ଥାଆନ୍ତି ଏବଂ ତା'ର ଡାକ ଶୁଣନ୍ତି । କୁରଆନ କହେ—

وَ إِذَا سَأَلَكَ عِبَادِي عَنِّي فَإِنِّي قَرِيبٌ ۖ أُجِيبُ
دَعْوَةَ الدَّاعِ إِذَا دَعَانِ ۖ

"(ହେ ମୁହମ୍ମଦ!) ଯଦି ମୋ ଭକ୍ତମାନେ ତୁମକୁ ମୋ ବିଷୟରେ ପଚାରନ୍ତି, ତେବେ ସେମାନଙ୍କୁ କହିଦିଅ ଯେ ମୁଁ ସେମାନଙ୍କ ଅତି ନିକଟରେ ଅଛି, ଯେତେବେଳେ ବି କେହି ମୋତେ ଗୁହାରି କରେ, ମୁଁ ତା' ଗୁହାରି ଶୁଣେ ।" (କୁରଆନ-୨/୧୮୬)

ଇସଲାମ ଅନୁଯାୟୀ ସାଧୁ-ସନ୍ଥ, ମୁନି-ଋଷି, ମହାପୁରୁଷ, ଈଶ୍ୱରଦୂତ ବା ଦେବଦୂତ ସମସ୍ତେ ଆଦରଣୀୟ ଓ ସମ୍ମାନନୀୟ । କିନ୍ତୁ ମଣିଷର ଉପାସ୍ୟ ନୁହନ୍ତି । ଏମାନେ ସମସ୍ତେ ସ୍ରଷ୍ଟାଙ୍କର ସୃଷ୍ଟି, ତାଙ୍କରି ଦୟାରୁ ଜୀବିତ ଓ ତାଙ୍କରି କୃପାର ଆଶ୍ରିତ । ସମସ୍ତେ ତାଙ୍କ ଭକ୍ତ କିନ୍ତୁ କେହି ତାଙ୍କ ବ୍ରହ୍ମତ୍ୱରେ ସହଭାଗୀ ନୁହନ୍ତି । ଯେହେତୁ ତାଙ୍କ ବିନା କେହି ମଣିଷକୁ ସୃଷ୍ଟି କରିନାହିଁ ବା ତାଙ୍କ ବ୍ୟତୀତ ଅନ୍ୟ କାହାରି କୃପା ବଳରେ ସେ ବଞ୍ଚିନାହିଁ, ସୁତରାଂ ତା' ସେବା-ଉପାସନାର କେବଳ ସେଇ ହିଁ ଅଧିକାରୀ । ସେଇ ହିଁ ଶରଣଯୋଗ୍ୟ ଏବଂ ତାଙ୍କରି ଦାସତ୍ୱରେ ମଣିଷର ଗୌରବ । କୌଣସି ଜୀବ ହେଉ, ଜଡ଼ ହେଉ, ମାନବ ହେଉ, ଦୈତ୍ୟ ହେଉ ବା ଦେବତା, ମଣିଷର ବିଧାତା ବା ଉପାସ୍ୟ ନୁହେଁ । ଏହି ସତ୍ୟଟିକୁ କୁରଆନ ଆରବୀ ଭାଷାରେ କହେ—'ଲା ଇଲାହା ଇଲ୍ଲଲ୍ଲାହ୍' (ଅଲ୍ଲାହଙ୍କ ବ୍ୟତୀତ କେହି ଉପାସ୍ୟ ନାହାନ୍ତି) । ଅର୍ଥାତ୍ ମନୁଷ୍ୟ କାୟମନୋବାକ୍ୟରେ ଅଲ୍ଲାହଙ୍କଠାରେ ନିଜକୁ ସମର୍ପଣ କରୁ, ଇନ୍ଦ୍ରିୟ ଓ ପରମ୍ପରାର ଦାସତ୍ୱରୁ ନିଜକୁ ମୁକ୍ତ କରି କେବଳ ତାଙ୍କରି ଉପାସନା କରୁ ଏବଂ ତାଙ୍କରି ଆଜ୍ଞା ପାଳନ କରୁ । ଏହି ଆତ୍ମସମର୍ପଣ ଓ ଆନୁଗତ୍ୟକୁ 'ଇସ୍‌ଲାମ' କୁହାଯାଏ ।



# 'ଈଶ୍ୱରଶରଣ' ସର୍ବପ୍ରାଚୀନ ଭକ୍ତିମାର୍ଗ

ଈଶ୍ୱରଙ୍କଠାରେ ନିଜକୁ ସମର୍ପଣ କରିବା ବା ତାଙ୍କର ଶରଣାଗତ ହୋଇଯିବା ହେଉଛି ଶ୍ରେଷ୍ଠଭକ୍ତି । ବୋଧହୁଏ କୌଣସି ଧର୍ମମତ ଏହାକୁ ଅସ୍ୱୀକାର କରେନାହିଁ । ଭାଗବତର ନବଧାଭକ୍ତିରେ ନଅ ପ୍ରକାର ଭକ୍ତିର ବର୍ଣ୍ଣନା କରାଯାଇଛି—

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ । (ଭାଗବତ)

ଅର୍ଥାତ୍ ଈଶ୍ୱରଙ୍କ ନାମ ଶ୍ରବଣ, କୀର୍ତ୍ତନ, ସ୍ମରଣ, ତାଙ୍କ ସେବା, ବନ୍ଦନା-ଅର୍ଚ୍ଚନା, ତାଙ୍କ ପ୍ରତି ଦାସ୍ୟଭାବ ଓ ସଖ୍ୟଭାବ ଏବଂ ତାଙ୍କ ନିକଟରେ ଆତ୍ମସମର୍ପଣ ହେଉଛି ଭକ୍ତି । ଭକ୍ତର ଏହି 'ଆତ୍ମସମର୍ପଣ' ବା 'ଈଶ୍ୱରଶରଣ'ର ଆରବୀ ଅନୁବାଦ 'ଇସଲାମ' । 'ଈଶ୍ୱରଶରଣ' ଏବଂ 'ଇସଲାମ' ଦୁଇଟି ଭିନ୍ନ ଭିନ୍ନ ଅର୍ଥବୋଧକ ଶବ୍ଦ ନୁହନ୍ତି । କୁରଆନ କହିଛି—

إِنَّ الدِّينَ عِندَ اللَّهِ الْإِسْلَامُ

ଇନ୍ନଦା-ଦୀନା ଇନ୍‌ଦଲ୍ଲାହିଲ୍-ଇସ୍‌ଲାମ

"ବାସ୍ତବରେ ଅଲ୍ଲାହଙ୍କ ନିକଟରେ ଆତ୍ମସମର୍ପଣ (ଇସଲାମ) ହିଁ ପ୍ରକୃତ ଧର୍ମ ।" (କୁରଆନ-୩/୧୯)

ଆତ୍ମସମର୍ପଣ କ'ଣ, ଏହାର ଉଚିତ ବର୍ଣ୍ଣନା ଭଗବତ ଗୀତାରେ କରାଯାଇଛି—

ବ୍ରହ୍ମଣ୍ୟାଧାୟ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ
ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା । (ଗୀତା-୫/୧୦)

ଅର୍ଥାତ୍ ଯିଏ ବିଷୟ ପ୍ରତି ଆସକ୍ତି ତ୍ୟାଗ କରି ନିଜର ସବୁ କର୍ମ ବ୍ରହ୍ମଙ୍କଠାରେ ଅର୍ପଣ କରେ, ପଦ୍ମପତ୍ରରେ ଜଳ ନ ଲାଗିଲା ପରି ତାକୁ ପାପ ସ୍ପର୍ଶ କରେ ନାହିଁ ।

ଅବିକଳ ସେଇକଥା କୁରଆନ କହେ—

قُلْ إِنَّ صَلَاتِي وَنُسُكِي وَمَحْيَايَ وَمَمَاتِي لِلَّهِ رَبِّ
الْعَلَمِيْنَ ﴿١٦٢﴾ لَا شَرِيْكَ لَهُ ۚ وَ بِذٰلِكَ اُمِرْتُ
وَ اَنَا اَوَّلُ الْمُسْلِمِيْنَ ﴿١٦٣﴾

କୁଲ୍ ଇନ୍ନସ୍-ସଲାତି ଓ ନୁସୁକୀ ଓ ମହ୍ୟାୟା ଓ ମମାତି ଲିଲ୍ଲାହି ରବ୍-ବିଲ୍ ଆ'ଲମୀନ୍ । ଲା ଶରୀକା ଲହୁ, ଓ ବିଜାଲିକା ଉମିର୍‌ତୁ ଓ ଅନା ଅୱ୍ୱଲୁଲ୍ ମୁସ୍‌ଲିମୀନ୍ ।

"କହିଦିଅ ଯେ ମୋ ପ୍ରାର୍ଥନା, ମୋର ସବୁ ଉପାସନା, ମୋ ଜୀଇଁବା-ମରିବା, ସବୁକିଛି ସର୍ବଲୋକେଶ୍ୱର ଅଲ୍ଲାହ୍‌ଙ୍କ ପାଇଁ । ତାଙ୍କର କେହି ସହଭାଗୀ ନାହାନ୍ତି ଏବଂ ମୋତେ ଏହାହିଁ ଆଜ୍ଞା ଦିଆଯାଇଛି ଆଉ ମୁଁ ସର୍ବପ୍ରଥମେ ନିଜକୁ ସମର୍ପିତ କରୁଛି ।"
(କୁରଆନ-୬/୧୬୨-୧୬୩)

ତେଣୁ ଯିଏ ନିଜର ସମସ୍ତ କର୍ମ ବ୍ରହ୍ମଙ୍କଠାରେ ଅର୍ପଣ କରି ତାଙ୍କର ଦାସ ହୋଇଯାଏ, ସେ ବ୍ରହ୍ମଭକ୍ତ ଏବଂ ତାକୁ ଆରବୀ ଭାଷାରେ 'ମୁସଲିମ୍' କୁହାଯାଏ । ଈଶ୍ୱରଶରଣର ମାର୍ଗ ବିଶ୍ୱର ସର୍ବପ୍ରାଚୀନ ଭକ୍ତିମାର୍ଗ । ଅବଶ୍ୟ ବିଭିନ୍ନ ଯୁଗର ମାନବଜାତିର ଭାଷାରେ ଏହାର ଅନ୍ୟ ନାମ ଥାଇପାରେ । ଈଶ୍ୱରଙ୍କର ଲକ୍ଷାଧିକ ପ୍ରତିନିଧି ବିଶ୍ୱର ପ୍ରତ୍ୟେକ ସମ୍ପ୍ରଦାୟରେ ଏହି ମାର୍ଗର ପ୍ରଚାର କରିଛନ୍ତି ବୋଲି କୁରଆନ କହେ—ଓଲିକୁଲ୍ଲି ଉମ୍ମତିର-ରସୁଲ । ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ଈଶ୍ୱରଦୂତ ଆସିଛନ୍ତି । (କୁରଆନ-୧୦-୪୭) ମହାମାନ୍ୟ ମୁହମ୍ମଦ ଏହି ଆଦିସ୍ରୋତର ପୁନଃସ୍ଥାପକ ଏବଂ ସେହି ଜଗତକର୍ତ୍ତାଙ୍କ ପ୍ରତିନିଧି ଯାହାଙ୍କୁ ବେଦ ଓ ବେଦାନ୍ତରେ 'ବ୍ରହ୍ମ' ଏବଂ କୁରଆନରେ 'ଅଲ୍ଲାହ୍' କୁହାଯାଇଛି । ସେ କୌଣସି ନୂତନ ଧର୍ମ ପ୍ରତିଷ୍ଠା କରିନାହାନ୍ତି ବା କୌଣସ ନୂତନ ତତ୍ତ୍ୱ ପ୍ରଚାର କରିନାହାନ୍ତି । ତେଣୁ ତାଙ୍କର ମୌଳିକ ଶିକ୍ଷାଗୁଡ଼ିକ ଅନ୍ୟ ଈଶ୍ୱରଦୂତଙ୍କ ଶିକ୍ଷାଠାରୁ ଭିନ୍ନ ନୁହେଁ ।

● ● ●

# ନିରାକାରବାଦ

ଜଣକ ନିକଟରେ ଆତ୍ମସମର୍ପଣ ବା ଜଣକର ଦାସତ୍ୱ ମଣିଷର ପ୍ରାକୃତିକ ସ୍ୱଭାବ । ସବୁ ଜାଗାରେ, ସବୁ ଅବସ୍ଥାରେ ବିନା ସାଧନରେ ନିରାକାର ବ୍ରହ୍ମଙ୍କ ସେବା କରାଯାଇପାରେ । ସତ କହିବାକୁ ଗଲେ ବିପଦରେ ସେଇ ଜଣକୁ ହିଁ ଅନ୍ତର ଡ଼ାକେ। ଏହା ବ୍ୟତୀତ, ବ୍ରହ୍ମଙ୍କ ଏକତ୍ୱ ହିଁ ତାଙ୍କ ସନ୍ତାନମାନଙ୍କ ମଧ୍ୟରେ ଏକତା ଓ ଭ୍ରାତୃଭାବ ଆଣିପାରେ । ଈଶ୍ୱରଙ୍କ ନିରାକାରତତ୍ତ୍ୱର ସମର୍ଥନ କରି ଭାଗବତରେ ଶ୍ରୀ ଜଗନ୍ନାଥ ଦାସ କହନ୍ତି—

ସେ ଶୂନ୍ୟ ମଧ୍ୟେ ନିରାକାର, ମନ ବଚନେ ଅଗୋଚର ।

(ଭାଗବତ-୨/୧୦)

ପୁନଶ୍ଚ କୁହନ୍ତି -

ଦେବ ମାନବେ ଅଗୋଚର, ଯେ ବ୍ରହ୍ମ ନିତ୍ୟ ନିରାକାର
ତୁ ନିରାକାର ନିରଞ୍ଜନ, ପରମ ବ୍ରହ୍ମ ଭଗବାନ । (ଭାଗବତ-୧୦.୯୧)

ଶ୍ରୀ ଚୈତନ୍ୟ ଦାସ ବିଷ୍ଣୁଗର୍ଭ ପୁରାଣରେ କୁହନ୍ତି—

ଅଗୋଚର ପୁରୁଷ ସେ ନାହିଁ ରୂପବର୍ଣ୍ଣ
ଥଏ ଥିତି ନାହିଁ ତାର, ଅଟଇ ମହାଶୂନ୍ୟ
ରୂପବନ୍ତ ନୁହଇ ସେ, ଅରୂପ ତା'ର ଦେହୀ
ଶୂନ୍ୟ ସଂଗରେ ସେ ଶୂନ୍ୟ ହୋଇଥାଇ ॥

(ଚୈତନ୍ୟ ଦାସ, ବିଷ୍ଣୁଗର୍ଭ ପୁରାଣ)

ପଦ୍ମପୁରାଣରେ କୁହାଯାଇଛି—

ନିରୀହଞ୍ଚ ନିରାକାରଂ ପରମାତ୍ମାନମୀଶ୍ୱରମ୍ ।
ସ୍ୱେଚ୍ଛାମୟଂ ସ୍ୱତନ୍ତ୍ରଞ୍ଚ ସର୍ବକାରଣକାରଣମ୍ ॥

(ପଦ୍ମପୁରାଣ, ୧୧/୨୧)

ଅର୍ଥାତ ସେ ପରମାତ୍ମା ନିରୀହ, ନିରାକାର, ସ୍ୱଇଚ୍ଛାମୟ, ସ୍ୱତନ୍ତ୍ର ଏବଂ ସବୁ କାରଣର କାରଣ ଅଟନ୍ତି ।

ଶ୍ରୀ ଦ୍ୱାରିକାଦାଶ ଭାଗବତରେ କହନ୍ତି—

କାଷ୍ଠ ପାଷାଣ ଲୌହବନ୍ତା, ଏସବୁ ଅଜ୍ଞଙ୍କ ଦେବତା ।
ଏହାଙ୍କ ଦେହେ ଜ୍ଞାନ ନାହିଁ, ଶୁଣ ଉତ୍ତମ ମନ ଦେଇ ॥ (ପୃ-୨୪୫)

ଶ୍ରୀ ଅଚ୍ୟୁତାନନ୍ଦ କହନ୍ତି—

ସେ ଅଣାକାର ମଣ୍ଡଳ ନିରାକାର ଜାଣ,
ରୂପରେଖ ନାହିଁ ତାର ଆପେ ନିରିମାଣ । (କୈବର୍ତ୍ତଗୀତା)

ନୀତିଶତକମ୍‌ରେ କୁହାଯାଇଛି—

ଦିକ୍କାଲାଦ୍ୟନବଚ୍ଛିନ୍ନାନ୍ତ ଚିନ୍ମାତ୍ରମୂର୍ତ୍ତୟେ ।
ସ୍ୱାନୁଭୂତ୍ୟେକମାନାୟ ନମଃ ଶାନ୍ତାୟ ତେଜସେ ॥
(ଭର୍ତ୍ତୃହରି, ନୀତିଶତକମ୍, ୧)

ଅର୍ଥାତ୍ ଯେ ଦେଶ, କାଳ ଆଦି ଦ୍ୱାରା ସୀମିତ ନୁହନ୍ତି, ଅନନ୍ତ ଏବଂ ଏକମାତ୍ର ପ୍ରକାଶ ହିଁ ଯାହାଙ୍କ ମୂର୍ତ୍ତି ଓ ଏକମାତ୍ର ଅନୁଭବ ହିଁ ଯାହାଙ୍କ ଅବସ୍ଥିତିର ପ୍ରମାଣ ଅଟେ, ଏପରି ଶାନ୍ତ ତେଜଯୁକ୍ତ ପରମ ପିତା ପରମାତ୍ମାଙ୍କୁ ମୋର ନମସ୍କାର ।

'ଦେବପୂଜା'ରେ ମାୟାଧର ମାନସିଂହ ପଚାରିଛନ୍ତି—

ପୁରୋହିତ ଶୁଦ୍ଧପୂତ ହୋଇ, ଦେଉଳରେ କା' ପୂଜା କର ହେ ?
ସୃଷ୍ଟି ଉଦାର ଆଲୋକ, ସେ ଦିଅଁକି ଅନ୍ଧକାରେ ରହେ ?
ଅନ୍ଧକାରେ ଆଖିବୁଜି ତାକୁ, ଦେଖିଲେ କିପାଁ ଏ ପ୍ରୟାସ
ଆଖି ମେଲି ଦେଖନା ଆଲୋକେ, କି ସୁନ୍ଦର ତାହାର ପ୍ରକାଶ ।
ଅନ୍ତରରୁ ଅନ୍ତରୀକ୍ଷେ ବ୍ୟାପି ବିରାଜିତ ଯେ ଭୁବନେଶ୍ୱର
କ୍ଷୁଦ୍ର ରୁଗ୍‌ଣ ଅନ୍ଧକାର ଗୃହେ, ତାର କିପାଁ ଆରାଧନା କର ?

କୁନ୍ତଳା କୁମାରୀ ସାବତ କୁହନ୍ତି—

ହେ ଅରୂପରୂପ ତୁମ୍ଭର ସ୍ୱରୂପ କେବେ ତ ମୁଁ ଦେଖି ନାହିଁ ।
କଳ୍ପନା ନୟନେ ଦେଖେଁ ଅନୁକ୍ଷଣେ କଳ୍ପନାରେ ଅଛି ପାଇ ॥
(କୁନ୍ତଳା କୁମାରୀ ସାବତ, ସ୍ୱରୂପ)

ଚାଣକ୍ୟ ନୀତିରେ କୁହାଯାଇଛି—

ନ କାଷ୍ଠେ, ବିଦ୍ୟତେ ଦେବୋ ନ ପାଷାଣେ ନ ମୃଣ୍ମୟେ ।
ଭାବେ ହି ବିଦ୍ୟତେ ଦେବସ୍ତସ୍ମାଦଭାବୋ ହି କାରଣମ୍ ॥
(ଚାଣକ୍ୟ ନୀତି-୮/୧୨)

ପ୍ରାରମ୍ଭରୁ ସନାତନ ଧର୍ମରେ ପ୍ରତୀକ ଉପାସନାର ପ୍ରଚଳନ ନଥିଲା । ଆର୍ଯ୍ୟ ଋଷିଗଣ ନିରାକାର ବ୍ରହ୍ମଙ୍କର ଉପାସନା କରୁଥିଲେ । ବୈଦିକ ଆଶ୍ରମଗୁଡ଼ିକରେ ଏକେଶ୍ୱରବାଦ ପ୍ରଚଳିତ ଥିଲା ଏବଂ ଶିକ୍ଷା ସମାପ୍ତି ପରେ ଶିଷ୍ୟମାନଙ୍କୁ ଉପଦେଶ ଦିଆଯାଉଥିଲା ଯେ, ଈଶ୍ୱରଙ୍କ ସମ୍ପର୍କରେ ଠିକ୍ ଜ୍ଞାନ ଉପନିଷଦରୁ ଅର୍ଜନ କରିବା ହେଉଛି ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । (ଏଲଫିନ୍‌ଷ୍ଟୋନ୍, ହିଷ୍ଟ୍ରି ଅଫ୍ ଇଣ୍ଡିଆ, ପୃ-୭୩-୭୪) ଐତିହାସିକ ମୁନିର ଉଇଲିୟମଙ୍କ ମତରେ ମନୁସ୍ମୃତିର ସଙ୍କଳନ ସମୟରେ ସାକାର ଉପାସନାର ପ୍ରଚଳନ ଥିବା ସନ୍ଦେହଜନକ । (ଇଣ୍ଡିଆନ୍ ୱିସ୍‌ଡମ୍, ପୃ-୨୧୮) ବୈଦିକ ଯୁଗର ଅନେକ ବର୍ଷ ପରେ ପ୍ରତୀକ ଉପାସନା ଧର୍ମରେ ପ୍ରବେଶ କଲା । ସାଧାରଣ ଭକ୍ତଙ୍କ ପକ୍ଷରେ ନିରାକାର ବ୍ରହ୍ମଙ୍କ କଳ୍ପନା କଷ୍ଟକର ମନେକରି ପ୍ରତୀକ ଉପାସନା ଆରମ୍ଭ ହେଲା । ପ୍ରାଥମିକ ଅବସ୍ଥାରେ ଭକ୍ତ ମନରେ ଏକାଗ୍ରତା ଆଣିବା ଏହାର ଉଦ୍ଦେଶ୍ୟ ଥିଲା । ମାତ୍ର ଧୀରେ ଧୀରେ ଏହା ଧର୍ମର ଏକ ମହତ୍ତ୍ୱପୂର୍ଣ୍ଣ ଅଙ୍ଗ ରୂପେ ପରିଗଣିତ ହେବାକୁ ଲାଗିଲା ।

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ରାଜା ରାମମୋହନ ରାୟ ଏବଂ ଊନବିଂଶ ଶତାବ୍ଦୀରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଭାରତରେ ନିରାକାରବାଦର ପ୍ରଚାର କରିଥିଲେ । ଏବେ ଭାରତରେ ଅନେକ ହିନ୍ଦୁ ସମ୍ପ୍ରଦାୟରେ ନିରାକାରବାଦ ପ୍ରଚଳିତ । ମହର୍ଷି ଦୟାନନ୍ଦଙ୍କ ଆର୍ଯ୍ୟ ସମାଜ, ରାଜା ରାମମୋହନ ରାୟଙ୍କ ବ୍ରାହ୍ମ ସମାଜ, ପ୍ରାର୍ଥନା ସମାଜ, ନାଥ ସଂମ୍ପ୍ରଦାୟ, ରାମସ୍ନେହୀ ସମ୍ପ୍ରଦାୟ, ସନ୍ଥ

ବୀରଭାନୁଙ୍କ ସତନାମୀ ସମ୍ପ୍ରଦାୟ, ସନ୍ଥ ବିଶ୍ୱେଶ୍ୱରଙ୍କ ଲିଙ୍ଗାୟତ ସମ୍ପ୍ରଦାୟ, ଶିବାଜୀଙ୍କ ଗୁରୁ ରାମଦାସଙ୍କ ଅନୁଯାୟୀଗଣ, ସନ୍ଥ ଜ୍ଞାନେଶ୍ୱରଙ୍କ ଭକ୍ତଗଣ, ଯୋଗୀ କବୀର, ତାମିଲ ଆଚାର୍ଯ୍ୟ ମଣିକ୍କବାଚକର, ସନ୍ଥ ତୁକାରାମ ଓ ତାଙ୍କ ସମ୍ପ୍ରଦାୟ, ସନ୍ଥ ପ୍ରାଣନାଥ ସମ୍ପ୍ରଦାୟ, ସନ୍ଥ ରଣଦାସ, ସନ୍ଥ ରାଇଚରଣ ଦାସ, ମହିମା ସ୍ୱାମୀଙ୍କ ଅଲେଖ ସମ୍ପ୍ରଦାୟ ଇତ୍ୟାଦି ନିରାକାର ବ୍ରହ୍ମଙ୍କ ଉପାସନା କରନ୍ତି ।

ଯାହାହେଉ, ହିନ୍ଦୁ ସଂସ୍କୃତିରେ ସାକାରବାଦ ଓ ନିରାକାରବାଦ ଉଭୟ ପନ୍ଥାକୁ ମାନ୍ୟତା ଦିଆଯାଇଛି । କିନ୍ତୁ ନିରାକାରବାଦ ସହ ଇସଲାମର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ରହିଛି ।

କୁରଆନ ଅନୁଯାୟୀ ବିଶ୍ୱର ସବୁ ଈଶ୍ୱରଦୂତଙ୍କୁ ଏକ ଈଶ୍ୱରଙ୍କ ଉପାସନାର ଆଦେଶ ଦିଆଯାଇଥିଲା—

> ''ଏବଂ (ହେ ମୁହମ୍ମଦ !) ତୁମ ପୂର୍ବରୁ ଆମ୍ଭେ ଯେତେ ଈଶ୍ୱରଦୂତ ପଠାଇଛୁ, ସମସ୍ତଙ୍କୁ ଆମ୍ଭେ ଏହାହିଁ ଦୈବବାଣୀ କରିଥିଲୁ ଯେ ଆମ୍ଭ ବ୍ୟତୀତ କେହି ଉପାସନା ଯୋଗ୍ୟ ନୁହେଁ ! ଏଣୁ ଆମ୍ଭର ହିଁ ଉପାସନା କର ।'' (କୁରଆନ-୨୧/୨୫)

ସୁତରାଂ, ବାଇବଲ ମଧ୍ୟ ନିରାକାର ତତ୍ତ୍ୱର ପ୍ରଚାର କରିଛି ବୋଲି ଆମେ ଜାଣିବାକୁ ପାଉ । ଆସନ୍ତୁ ବାଇବଲର ଈଶ୍ୱରତତ୍ତ୍ୱ ସମ୍ପର୍କରେ କିଛି ଆଲୋଚନା କରିବା ।



# ବାଇବଲର ନିରାକାରତତ୍ତ୍ୱ

ବାଇବଲରେ ଈଶ୍ୱରଙ୍କ ସମ୍ପର୍କରେ ଉପଦେଶ ଦିଆଯାଇଛି—

"ଏହେତୁ ତୁମ୍ଭେମାନେ ଆମ୍ଭର ପ୍ରତିଯୋଗୀ ଅନ୍ୟ ଦେବତାଗଣ ନିର୍ମାଣ କରିବ ନାହିଁ, ଆପଣାମାନଙ୍କ ନିମନ୍ତେ ରୌପ୍ୟମୟ ଦେବତା ଓ ସ୍ୱର୍ଣ୍ଣମୟ ଦେବତା ନିର୍ମାଣ କରିବ ନାହିଁ ।" (ଏକ୍ସୋଡସ, ୨୦/୨୩)

"ଆଉ ତୁମ୍ଭର କି ତୁମ୍ଭ ପୂର୍ବପୁରୁଷମାନଙ୍କର ଅଜ୍ଞାତ କୌଣସି ଦେବତା, ଅର୍ଥାତ ତୁମ୍ଭମାନଙ୍କ ଚତୁର୍ଦ୍ଦିଗସ୍ଥିତ ନିକଟବର୍ତ୍ତୀ ବା ତୁମ୍ଭଠାରୁ ଦୂରବର୍ତ୍ତୀ, ପୃଥିବୀର ଏକ ପ୍ରାନ୍ତରୁ ପୃଥିବୀର ଅନ୍ୟ ପ୍ରାନ୍ତ ମଧ୍ୟରେ ଯେକୌଣସି ଗୋଷ୍ଠୀର ଯେକୌଣସି ଦେବତା ହେଉ, ତାହା ବିଷୟରେ ତୁମ୍ଭକୁ ଭୁଲାଇ ଯେବେ ତୁମ୍ଭ ମାତୃ-ପୁତ୍ର-ଭ୍ରାତା, କି ତୁମ୍ଭ ପୁତ୍ର, କି ତୁମ୍ଭ କନ୍ୟା, କି ତୁମ୍ଭ ବକ୍ଷସ୍ଥାୟିନୀ ଭାର୍ଯ୍ୟା, କି ଅବା ତୁମର ପ୍ରାଣ ସମାନ ମିତ୍ର ଗୋପନରେ କହେ, ଚାଲ ଆମ୍ଭେମାନେ ଅନ୍ୟ ଦେବତାଗଣର ସେବା କରୁ, ତେବେ ତୁମ୍ଭେ ସେହି ଲୋକର କଥାରେ ସମ୍ମତ ହେବ ନାହିଁ କି ତାହାର କଥା ଶୁଣିବ ନାହିଁ, କି ଅବା ତାହା ପ୍ରତି ଚକ୍ଷୁଲଜ୍ଜା କରିବ ନାହିଁ, ଅବା ତାହାକୁ ଦୟା କରିବ ନାହିଁ କି ତାହାକୁ ଲୁଚାଇ ରଖିବ ନାହିଁ ।" (ଡ୍ୟୁଟ୍ରୋନୋମୀ, ୧୩/୬-୮)

"ଯେଉଁ ମନୁଷ୍ୟ ସଦାପ୍ରଭୁଙ୍କ ଘୃଣିତ, ଶିଳ୍ପକରର ହସ୍ତକୃତ କୌଣସି ଖୋଦିତ କି ଛାଞ୍ଚରେ ଢଳା ପ୍ରତିମା ନିର୍ମାଣ କରି ଗୋପନରେ ସ୍ଥାପନ କରେ, ସେ ଶାପଗ୍ରସ୍ତ ହେଉ । ତହିଁରେ ସମସ୍ତ ଲୋକ ଉତ୍ତର ଦେଇ କହିବେ ଆମେନ୍ (ଏପରି ହେଉ) ।" (ଡ୍ୟୁଟ୍ରୋନୋମୀ, ୨୭/୧୫)

"(ସାବଧାନ), ନୋହିଲେ ତୁମ୍ଭେମାନେ ଆପଣାମାନଙ୍କୁ ଭ୍ରଷ୍ଟ କରି ପୁରୁଷର କି ସ୍ତ୍ରୀର ମୂର୍ତ୍ତି, କି ପୃଥିବୀସ୍ଥ କୌଣସି ପଶୁର ମୂର୍ତ୍ତି, କି ଆକାଶରେ ଉଡ଼ନ୍ତା କୌଣସି ପକ୍ଷୀର ମୂର୍ତ୍ତି, କି ଭୂଚର କୌଣସି ଉରୋଗାମୀ ଜନ୍ତୁର ମୂର୍ତ୍ତି, କି ଭୂମିର ନୀଚସ୍ଥ ଜଳଚର କୌଣସି ଜନ୍ତୁର ମୂର୍ତ୍ତି କରି ଆପଣାମାନଙ୍କ

ନିମନ୍ତେ କୌଣସି ଖୋଦିତ ପ୍ରତିମା ନିର୍ମାଣ କରିବ । କି ଅବା ସଦାପ୍ରଭୁ ତୁମ୍ଭମାନଙ୍କ ପରମେଶ୍ୱର ଯେଉଁମାନଙ୍କୁ ସମୁଦାୟ ଆକାଶମଣ୍ଡଳର ଅଧଃସ୍ଥିତ ସମସ୍ତ ଦେଶୀୟ ଲୋକମାନଙ୍କ ନିମନ୍ତେ ନିଯୁକ୍ତ କରିଅଛନ୍ତି, ଏପରି ସୂର୍ଯ୍ୟ, ଚନ୍ଦ୍ର ଓ ତାରା ପ୍ରଭୃତି ଆକାଶର ସମସ୍ତ ବାହିନୀ ପ୍ରତି ଊର୍ଦ୍ଧ୍ୱଦୃଷ୍ଟି କରି ଅନାଇଲେ ଭ୍ରାନ୍ତ ହୋଇ ତୁମେମାନେ ସେମାନଙ୍କୁ ପ୍ରଣାମ କରିବ ଓ ସେବା କରିବ ।''

(ଡ୍ୟୁଟ୍ରୋନୋମୀ, ୧୩/୬-୮)

ବାଇବଲରେ କେବଳ ଜଣେ ଈଶ୍ୱରଙ୍କ ଉପାସନାର ଆଦେଶ ଦିଆଯାଇଥିଲା । ପରେ ସେଥିରେ ସଂଶୋଧନ ହେଲା । ଯୀଶୁଙ୍କ ସମୟରେ ତ ସବୁ ଠିକ୍ ଥିଲା ଏବଂ ତାଙ୍କୁ ଈଶ୍ୱରଙ୍କ ପ୍ରତିନିଧି ରୂପେ ଗ୍ରହଣ କରାଯାଇଥିଲା, କିନ୍ତୁ ପରବର୍ତ୍ତୀ ସମୟରେ ତାଙ୍କୁ ଈଶ୍ୱରଙ୍କ ଆସନରେ ବସାଇ ଦିଆଗଲା । ମହାମାନ୍ୟ ଯୀଶୁ ସ୍ପଷ୍ଟ କୁହନ୍ତି—

''ଆମମାନଙ୍କର ଈଶ୍ୱର ଏକମାତ୍ର ପ୍ରଭୁ ଅଟନ୍ତି ।''

(ବାଇବଲ, ମାର୍କ ୧୨:୨୯)

ଏବେ ମଧ୍ୟ ଅନେକ ଖ୍ରୀଷ୍ଟୀୟାନ ନିରାକାରବାଦରେ ବିଶ୍ୱାସ କରନ୍ତି । ଖ୍ରୀଷ୍ଟଧର୍ମର ୟୁନିଟାରୀୟାନ ସମ୍ପ୍ରଦାୟ ଜଣେ ଈଶ୍ୱରରେ ବିଶ୍ୱାସ କରୁଥିବାବେଳେ କେତେକ ଟ୍ରିନିଟିତତ୍ତ୍ୱରେ ବିଶ୍ୱାସ କରନ୍ତି । ଏହି ତତ୍ତ୍ୱ ଅନୁଯାୟୀ ଈଶ୍ୱର ହେଲେ ପିତା, ମହାମାନ୍ୟ ଯୀଶୁ ହେଉଛନ୍ତି ପୁତ୍ର ଏବଂ ସ୍ୱର୍ଗଦୂତ ହେଉଛନ୍ତି ପବିତ୍ର ଆତ୍ମା । ଏହି ତିନିଜଣ ଭିନ୍ନ ଭିନ୍ନ ହେଲେ ମଧ୍ୟ ଜଣେ ଏବଂ ଅଭିନ୍ନ ।

ଟ୍ରିନିଟି ଶବ୍ଦ ବାଇବଲ୍‌ରେ ନାହିଁ କିମ୍ବା ମହାମାନ୍ୟ ଯୀଶୁ ଏହି ତତ୍ତ୍ୱର ଶିକ୍ଷା ଦେଇଥିବାର କୌଣସି ପ୍ରମାଣ ନାହିଁ । ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା ଏ ସମ୍ପର୍କରେ ଲେଖିଛି ଯେ, ଟ୍ରିନିଟି ଶବ୍ଦ ବା ଟ୍ରିନିଟି ମତବାଦ ବାଇବଲ୍‌ର ନୂତନ ନିୟମରେ ନାହିଁ କିମ୍ବା ମହାମାନ୍ୟ ଯୀଶୁ ଓ ତାଙ୍କର ଶିଷ୍ୟମାନେ ବାଇବଲ୍‌ର ପୁରାତନ ନିୟମରେ ରହିଥିବା ଏକେଶ୍ୱରବାଦର ଶିକ୍ଷାର ବିରୋଧ କରିବାକୁ ଚାହିଁ ନଥିଲେ । ବ୍ରିଟାନିକା ପୁଣି ଲେଖିଛି—

"ଅନେକ ଶତାବ୍ଦୀ ଧରି ବହୁ ବାଦାନୁବାଦ ପରେ ଧୀରେ ଧୀରେ ଏହି ଟ୍ରିନିଟି ମତବାଦ ବିକଶିତ ହେଲା ।"(୩୫) ପ୍ରାୟ ସମାନ ମତ ଖ୍ରୀଷ୍ଟିୟାନ ବିଦ୍ୱାନ ଆଲଭାନ ଲାମସନ୍ ତାଙ୍କ ପୁସ୍ତକ 'ଦି ଚର୍ଚ୍ଚ ଅଫ୍ ଦି ଫାଷ୍ଟ୍ ଥ୍ରୀ ସେଞ୍ଚୁରିଜ୍'ରେ ଦେଇଛନ୍ତି ।(୩୬)

ଇତିହାସରୁ ଆମେ ଜାଣିବାକୁ ପାଉ ଯେ, ମହାମାନ୍ୟ ଯୀଶୁଙ୍କ ସମୟରେ ଏହି ଟ୍ରିନିଟି ମତବାଦର କୌଣସି ଅସ୍ତିତ୍ୱ ନଥିଲା । ଏହା ପ୍ରାୟ ଯୀଶୁଙ୍କ ୩୦୦ବର୍ଷ ପରେ ସୃଷ୍ଟି ହେଲା । ଖ୍ରୀ.ଅ. ୩୨୫ରେ ସମ୍ରାଟ କନ୍‌ଷ୍ଟାନ୍‌ଟାଇନ୍‌ଙ୍କ ଅଧକ୍ଷତାରେ ଅନୁଷ୍ଠିତ କାଉନ୍‌ସିଲ୍ ଅଫ୍ ନାଇସ୍‌ରେ ଅନେକ ବିତର୍କ ଓ ବାଦାନୁବାଦ ମଧ୍ୟରେ ଏହି ମତବାଦ ଗୃହୀତ ହୋଇଥିଲା ଏବଂ ଖ୍ରୀ:ଅ.୩୮୧ରେ କନ୍‌ଷ୍ଟାଣ୍ଟିନୋପଲ୍ କାଉନ୍‌ସିଲ ଏହାକୁ ଚୂଡ଼ାନ୍ତ ରୂପ ଦେଲା । ସେହି ସମୟଠାରୁ ରୋମ୍‌ର ସମ୍ରାଟମାନେ ଟ୍ରିନିଟି ତତ୍ତ୍ୱରେ ବିଶ୍ୱାସ କରୁ ନଥିବା ଖ୍ରୀଷ୍ଟିୟାନମାନଙ୍କୁ ଶାସ୍ତି ଦେବାପାଇଁ ଘୋଷଣା କଲେ । ଖ୍ରୀ.ଅ.୩୮୩ରେ ସମ୍ରାଟ ଥିଓଡ଼ସିୟସ ପ୍ରଥମେ ଏହି ଘୋଷଣା କରିଥିଲେ ।(୩୭)

---

(୩୫) Trinity, Encyclopedia Britannica, Ultimate Reference Suite, Chicago, 2011 : "Neither the word trinity nor the explicit doctrine appears in the New Testament nor did Jesus and his followers intend to contradict the 'Shema' in the Hebrew Scriptures—"Hear, O Israel, The Lord, our Lord, is one Lord. (Deutronomy 6 : 4)"... The doctrine developed gradually over several centuries and through many controversies."

(୩୬) Alvan Lamson, DD, The Church of the First Three Centuries, Boston, 1860, p.34 : "In consistency with the view we maintain that the doctrine of Trinity was of gradual and comparatively late formation, that it had its origin in a source entirly foreign from that of the Jewish and Christian scriptures; that is grew up and ingrafted on Christianity through the hands of the Platonizing fathers."

(୩୭) Hugh H. Stannus, A History of the Origin of the Doctrine of the Trinity in the Christian Church, London, 1882, p.1 : "The origin and development of the doctrine of Triune Diety in the Church is clearly traced to Platonic and other influences during the third and fourth centuries. Its introduction caused considerable discussion, agitation and strife during the period named. The Council of Nice (AD 325) voted

ସାର୍ ଆଇଜାକ୍ ନିଉଟନ୍ ମହାମାନ୍ୟ ଯୀଶୁଙ୍କୁ ମଣିଷ ତଥା ଈଶ୍ୱରଙ୍କର ଜଣେ ପ୍ରତିନିଧି ରୂପେ ଗ୍ରହଣ କରିଥିଲେ । ଅତି ସୁନ୍ଦର ଯୁକ୍ତି ଉପସ୍ଥାପନ କରି ଆଇଜାକ୍ ନିଉଟନ୍ କହନ୍ତି—

''କେବଳ ଜଣେ ହିଁ ଈଶ୍ୱର, ଯିଏ କି ସ୍ରଷ୍ଟା, ସଦା ଜୀବନ୍ତ, ସର୍ବବ୍ୟାପୀ, ସର୍ବଦର୍ଶୀ, ସର୍ବଶକ୍ତିମାନ୍, ଧରିତ୍ରୀ ଓ ଆକାଶର ସ୍ରଷ୍ଟା ଏବଂ ଈଶ୍ୱର ଓ ମଣିଷ ମଧ୍ୟରେ ଜଣେ ହିଁ ମଧ୍ୟସ୍ଥ—ମାନବ ଯୀଶୁ । ପିତା ଅଦୃଶ୍ୟ ଈଶ୍ୱର, ଯାହାଙ୍କୁ କୌଣସି ଆଖି ଦେଖିନାହିଁ ବା ଦେଖିପାରିବ ନାହିଁ । ଅନ୍ୟମାନେ କୌଣସି ନା କୌଣସି ସମୟରେ ଦୃଶ୍ୟମାନ ହୁଅନ୍ତି । ସମସ୍ତ ଉପାସନା (ପ୍ରଶଂସା, ପ୍ରାର୍ଥନା ବା ସ୍ତୁତି) ଯାହା ଯୀଶୁଙ୍କ ଆବିର୍ଭାବ ପୂର୍ବରୁ ସ୍ରଷ୍ଟାଙ୍କର ଅଧିକାର ଥିଲା, ସେଗୁଡ଼ିକ ଏବେ ମଧ୍ୟ ତାଙ୍କରି ଅଧିକାର । ଯୀଶୁ ପିତାଙ୍କର ଉପାସନା ହ୍ରାସ କରିଦେବାପାଇଁ ଆସି ନଥିଲେ ।''(୩୮)

ପ୍ରସିଦ୍ଧ ଐତିହାସିକ ଏଡ୍ୱାର୍ଡ ଗୀବନ ଏ ବିଷୟରେ କୁହନ୍ତି—

''ଟ୍ରିନିଟି ଏବଂ ଅବତାରବାଦର ରହସ୍ୟ ଏକେଶ୍ୱରବାଦ ସିଦ୍ଧାନ୍ତର ବିରୋଧୀ ମନେହୁଏ । ସେମାନେ ସୁସ୍ପଷ୍ଟ ଭାବରେ ତିନୋଟି ସମାନ ଉପାସ୍ୟଙ୍କୁ ପ୍ରବର୍ତ୍ତନ କଲେ ଏବଂ ମାନବ ଯୀଶୁଙ୍କୁ ଈଶ୍ୱରପୁତ୍ରରେ ରୂପାନ୍ତରିତ କରିଦେଲେ... ।''(୩୯)

---

in favour of the Diety of Christ; the Council of Constantinople (AD 381) fixed the doctrine of the Trinity. From that time, the Roman Emperors resolved and proclaimed, they would punish all Christians who would not believe in and worship three persons in one God."

(୩୮) SIR ISAAC NEWTON : "There is one God, the Father, ever living, Omnipresent, Omniscent, Almighty, the maker of heaven and earth and one Mediator between God and men—the man Christ Jesus. The Father is the invisible God, Whom no eye hath seen or can see. All other being are sometimesvisible. All the worship (whether praise or prayer or thanks giving) which was due to the father before the coming of Christ, is still due to Him. Christ came not to diminish the worship of his father." (Ibid.p.29)

(୩୯) Edward, Gibbon, Life of Mahommed, London : "The mysteries of the Trinity and incarnation appear to contradict the principle of divine

ସେହିପରି ଜନ ଡାଭେନ୍‌ପୋର୍ଟ ଲେଖିଛନ୍ତି—ଗୀବନ, ନିଉଟନ୍ ଏବଂ ପରସନ୍ ଆଦି ବିଶିଷ୍ଟ ବିଦ୍ୱାନ୍ ଏହି ତ୍ରିନିଟି ମତବାଦକୁ ଧର୍ମରେ ପ୍ରକ୍ଷେପଣ ବୋଲି କହିଛନ୍ତି ।[୪୦]

ବାଇବଲ ଅନେକ ବାର୍ତ୍ତାବହମାନଙ୍କ ବିଷୟରେ ବର୍ଣ୍ଣନା କରିଛି; କିନ୍ତୁ ସେମାନଙ୍କ ମଧ୍ୟରୁ କେହି ନିଜକୁ ସ୍ୱୟଂ ଈଶ୍ୱର ବୋଲି କହିନାହାନ୍ତି, ବରଂ ସେମାନେ ସମସ୍ତେ ଈଶ୍ୱରଙ୍କ ଭକ୍ତ ଥିଲେ ଏବଂ ତାଙ୍କରି ଉପାସନା କରୁଥିଲେ । ମହାମାନ୍ୟ ଯୀଶୁ ଈଶ୍ୱର ନଥିଲେ ବରଂ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ ହୋଇଥିଲେ ବୋଲି ସ୍ୱୟଂ ନିଜେ କହନ୍ତି—

"ମୁଁ ଆପଣାରୁ କିଛି କରିପାରେ ନାହିଁ, ମୁଁ ଯେପରି ଶୁଣେ, ସେହିପରି ବିଚାର କରେ, ଆଉ ମୋହର ବିଚାର ଯଥାର୍ଥ, କାରଣ ମୁଁ ଆପଣାର ଇଚ୍ଛାସାଧନ କରିବାକୁ ଚେଷ୍ଟା ନ କରି ମୋହର ପ୍ରେରଣକର୍ତ୍ତାଙ୍କର ଇଚ୍ଛା ସାଧନ କରିବାକୁ ଚେଷ୍ଟା କରେ ।" (ବାଇବଲ୍, ଯୋହନ ୫:୩୦)

ବାଇବଲ୍‌ର ଅନେକ ସ୍ଥାନରେ ମହାମାନ୍ୟ ଯୀଶୁଙ୍କୁ ଜଣେ Prophet ଅର୍ଥାତ୍ ବାର୍ତ୍ତାବହ ବୋଲି ବର୍ଣ୍ଣନା କରାଯାଇଛି ।[୪୧]

---

unity. In their obvious sense they introduced three equal dities and transform the man Jesus into the substance of the Son of God...." (p.75)

[୪୦] John Davenport, An apology for Mohammed and the Koran, London, 1869 p.74 : "The celebrated text of three witnesses (John i.v.7) which is the foundation of the docrine of Trinity has been proved by the labours of Newton, Gibbon, Person and other to have been an interpolation and calmet himself acknowledges that this verse is not found in any ancient copy of the Bible. Jesus taught the belief of one God, but Paul with the Apostle John, who was a Platonist, despoiled Christ's religion of all its unity and simplicity; by introducing the incomprehensible Trinity of Plato...."

[୪୧] "This is Jesus, the Prophet of Nazareth in Galilee." (Mathew 21 : 11) "After the people saw the miraculous sign that Jesus did, they began to say, "Surely this is the Prophet which to come into the world." (John 6 : 14). "They were all filled with awe and praised God 'a great

ମହାମାନ୍ୟ ଈଶ୍ୱରଦୂତଗଣ ଯେ 'ମନୁଷ୍ୟ' ଏହା ମଧ୍ୟ ସ୍ପଷ୍ଟ କରି ବାଇବଲ କହିଛି—

"ପ୍ରଥମେ ଏହା ଜ୍ଞାତ ହୁଅ ଯେ ଶାସ୍ତ୍ରର କୌଣସି ଭାବବାଣୀ ସ୍ୱତନ୍ତ୍ର ଭାବରେ ବ୍ୟାଖ୍ୟା କରିବାର ବିଷୟ ନୁହେଁ; କାରଣ କୌଣସି ଭାବବାଣୀ କେବେହେଁ ମନୁଷ୍ୟର ଇଚ୍ଛାରୁ ଉତ୍ପନ୍ନ ହୋଇନାହିଁ; ମାତ୍ର ଈଶ୍ୱର ପ୍ରେରିତ ମନୁଷ୍ୟମାନେ ପବିତ୍ର ଆତ୍ମାଙ୍କ ଦ୍ୱାରା ଚାଳିତ ହୋଇ କଥା କହିଥିଲେ ।"

(ବାଇବଲ୍, ୨ ପିତର-୧:୨୦-୨୧)

ବିଭିନ୍ନ ଗ୍ରନ୍ଥର ଶିକ୍ଷା ବିଷୟରେ ଏଠାରେ ଆଲୋଚନା କରିବାର ଉଦ୍ଦେଶ୍ୟ କେବଳ ପାଠକମାନଙ୍କୁ ଏହା ବୁଝାଇଦେବା ଯେ କୁର୍‌ଆନ ଏ ବିଷୟରେ କୌଣସି ନୂଆକଥା କହିନାହିଁ, ବରଂ ଏହା ସେହି ପୁରୁଣା କଥାର ପୁନରାବୃତ୍ତି କରିଛି, ଯାହା ବେଦ ଓ ବାଇବଲ୍ କହିଛନ୍ତି । କିନ୍ତୁ କୁର୍‌ଆନର ଶିକ୍ଷାରେ କୌଣସି ସଂଶୋଧନ ବା ପ୍ରକ୍ଷେପଣ ହୋଇନାହିଁ । ଏହା ସମସ୍ତ ଈଶ୍ୱରଦୂତଙ୍କୁ ମନୁଷ୍ୟ ଘୋଷଣା କରି କହିଛି—

"ଏବଂ (ହେ ମୁହମ୍ମଦ), ତୁମ ପୂର୍ବରୁ ଆମ୍ଭେ ଯେଉଁମାନଙ୍କୁ (ବାର୍ତ୍ତାବହ ରୂପେ) ପ୍ରେରଣ କରିଥିଲୁ, ସେମାନେ ମଧ୍ୟ ଜନବସତିରେ ବସବାସ କରୁଥିବା ପୁରୁଷ ହିଁ ଥିଲେ, ଯେଉଁମାନଙ୍କ ପ୍ରତି ଆମ୍ଭେ ଦୈବବାଣୀ କରୁଥିଲୁ ।"

(କୁର୍‌ଆନ, ୧୨:୧୦୯)

ଅବତାର କୁହାଯାଉ, ଋଷି କୁହାଯାଉ, ନବୀ ବା ରସୁଲ କୁହାଯାଉ, କିମ୍ବା ପ୍ରଫେଟ୍ କୁହାଯାଉ, ମହାମାନ୍ୟ ବ୍ରହ୍ମଦୂତଗଣ ସମସ୍ତେ ରକ୍ତମାଂସଧାରୀ ମଣିଷ । ସେମାନେ ଖାଆନ୍ତି, ପିଅନ୍ତି, ଶୁଅନ୍ତି ଏବଂ ଘରସଂସାର କରନ୍ତି । ସେମାନଙ୍କୁ ମଧ୍ୟ ଦୁଃଖ ବିପଦ ଆସେ ଏବଂ ଦୈବୀ ସହାୟତାର ଆବଶ୍ୟକତା ପଡ଼େ । ସେମାନେ ସମସ୍ତେ ଈଶ୍ୱରଙ୍କର ଉପାସନା କରନ୍ତି । ସେମାନେ ଈଶ୍ୱର

---

Prophet has appeared among us' (Luke 7 : 16). "About Jesus Nazareth they replied 'He was a Prophet powerful in world and deed before God and all the people." (Luke 24 : 19) "On hearing his words some of the people says ' Surely this man is the Prophet" (John 7 : 40)

ହୋଇଥିଲେ ନିଜର ଉପାସନା କରନ୍ତେ ନାହିଁ; କିନ୍ତୁ ଏହି ପୁରୁଷୋତ୍ତମମାନଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଓ ଅଲୌକିକ କାର୍ଯ୍ୟ ଯୋଗୁଁ ପରବର୍ତ୍ତୀ ସମୟରେ ଅନେକେ ସେମାନଙ୍କୁ ସାକ୍ଷାତ୍ ଈଶ୍ୱର ମନେ କରି ସେମାନଙ୍କର ଉପାସନା କରନ୍ତି । ଦିବ୍ୟଶିକ୍ଷାରେ ପ୍ରକ୍ଷେପଣ ଓ ପରିବର୍ତ୍ତନ ଯୋଗୁଁ ଏହା ହୁଏ ।

ଯେଉଁ ଅଲୌକିକ କାର୍ଯ୍ୟଗୁଡ଼ିକ ସେମାନେ କରନ୍ତି, ସେଗୁଡ଼ିକ ସେମାନଙ୍କର ନିଜସ୍ୱ ନୁହେଁ । ଈଶ୍ୱରଙ୍କ ଆଦେଶରେ ସେମାନେ ଏହି ଚମତ୍କାରିତା ଦେଖାଇ ଥାଆନ୍ତି । ଲୋକଙ୍କର ମନୋରଞ୍ଜନ କରିବା ବା ନିଜକୁ ଈଶ୍ୱର ବୋଲି ପ୍ରମାଣିତ କରିବା ସେମାନଙ୍କର ଉଦ୍ଦେଶ୍ୟ ନଥାଏ । ସେମାନେ ଯେ ଈଶ୍ୱରଙ୍କର ପ୍ରତିନିଧି, ଏହାର ପ୍ରମାଣ ସ୍ୱରୂପ ସେମାନେ ଚମତ୍କାରିତା ପ୍ରଦର୍ଶନ କରନ୍ତି, ଯାହା ଫଳରେ ଲୋକଙ୍କର ସେମାନଙ୍କ କଥା ପ୍ରତି ଆସ୍ଥା ଜାତ ହୁଏ । ଅନ୍ୟଥା ସେମାନେ ନିଜେ ମଧ୍ୟ ଈଶ୍ୱରଙ୍କର ବିଧାନ ପାଳନ କରନ୍ତି । ଅନ୍ୟମାନଙ୍କ ପରି ସେମାନେ ମଧ୍ୟ ନିଜ କର୍ମ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ।

ସ୍ରଷ୍ଟା ଓ ସୃଷ୍ଟି ମଧ୍ୟରେ ଅନେକ ଗୁଣାତ୍ମକ ପାର୍ଥକ୍ୟ ରହିଛି । ଈଶ୍ୱରଙ୍କ ଗୁଣ ବା ସ୍ୱଭାବଗୁଡ଼ିକୁ କୌଣସି ମାନବ ଧାରଣ କରିବା ପାଇଁ ସମର୍ଥ ନୁହେଁ, କାରଣ ମାନବୀୟ ଏବଂ ଈଶ୍ୱରୀୟ ଗୁଣଗୁଡ଼ିକ ପରସ୍ପରର ସମ୍ପୂର୍ଣ୍ଣ ବିପରୀତ । ଉଦାହରଣ ସ୍ୱରୂପ ମନୁଷ୍ୟ ଜନ୍ମନିଏ; କିନ୍ତୁ ଈଶ୍ୱର ଅଜନ୍ମା । ମନୁଷ୍ୟ ମରଣଶୀଳ; କିନ୍ତୁ ଈଶ୍ୱରଙ୍କର ମୃତ୍ୟୁ ନାହିଁ । ମନୁଷ୍ୟର ଆରମ୍ଭ ଓ ଅନ୍ତ ଅଛି; କିନ୍ତୁ ଈଶ୍ୱର ଅନାଦି ଓ ଅନନ୍ତ । ସେ ସୃଷ୍ଟିର ପ୍ରାରମ୍ଭରୁ ଥିଲେ ଏବଂ ସୃଷ୍ଟିର ବିଲୟ ପରେ ମଧ୍ୟ ବିଦ୍ୟମାନ ରହିଥିବେ । ମନୁଷ୍ୟ ଭୁଲ କରେ; କିନ୍ତୁ ଈଶ୍ୱର ଦୋଷରହିତ । ମଣିଷର ଆହାର, ନିଦ୍ରା ଓ ମୈଥୁନର ଆବଶ୍ୟକତା ଥାଏ; କିନ୍ତୁ ଈଶ୍ୱରଙ୍କର ଏସବୁର ଆବଶ୍ୟକତା ନଥାଏ । ମନୁଷ୍ୟ ସଦା ନିର୍ଭରଶୀଳ, ଅନ୍ୟର ସହାୟତା ବିନା ବଞ୍ଚିପାରିବ ନାହିଁ; କିନ୍ତୁ ଈଶ୍ୱର ସ୍ୱୟଂସମ୍ପୂର୍ଣ୍ଣ, ତାଙ୍କୁ କାହାରି ସହାୟତାର ଆବଶ୍ୟକତା ନାହିଁ । ମନୁଷ୍ୟର ଜ୍ଞାନ ଓ ଶକ୍ତି ସୀମିତ; କିନ୍ତୁ ଈଶ୍ୱରଙ୍କର ଜ୍ଞାନ ଅସୀମ ଆଉ ଶକ୍ତି ଅନନ୍ତ । ମନୁଷ୍ୟର ନିର୍ଦ୍ଦିଷ୍ଟ ରୂପ ଥାଏ ଏବଂ ତାକୁ ଦେଖି ହୁଏ; କିନ୍ତୁ ଈଶ୍ୱରଙ୍କୁ ଦେଖିହୁଏ ନାହିଁ । ଏହି କାରଣଗୁଡ଼ିକ ଯୋଗୁଁ ଈଶ୍ୱର

ମାନବ ରୂପ ଧାରଣ କରନ୍ତି ନାହିଁ । ମାନବ ରୂପ ଧାରଣ କଲେ ଆଉ ସେ ଈଶ୍ୱର ରହିବେ ନାହିଁ, କାରଣ ତାଙ୍କର ଈଶ୍ୱରୀୟ ଗୁଣଗୁଡ଼ିକ ରହିବ ନାହିଁ । ଭୁଲ କରିବା, ଭୁଲିଯିବା, ମିଥ୍ୟା କହିବା, ଜନ୍ମ ହେବା, ମରିବା, ଖାଇବା, ପିଇବା, ଶୋଇବା ଆଦି ମାନବୀୟ ଗୁଣ । ଜଣେ ମଣିଷ ଥାଇ ମଧ୍ୟ ଈଶ୍ୱର, ଜନ୍ମ ନେଇ ମଧ୍ୟ ଅଜନ୍ମା, ଭୁଲ କରେ କିନ୍ତୁ ଦୋଷରହିତ, ଅଜ୍ଞ ପୁଣି ସର୍ବଜ୍ଞ, ରୂପ ଥାଇ ମଧ୍ୟ ଅରୂପ, ମୃତ୍ୟୁ ଭୋଗ କରେ ଏବଂ ଅବିନାଶୀ—ଉଭୟ କଥା ଏକକାଳୀନ ସମ୍ଭବ ନୁହେଁ । ତେଣୁ କୁରଆନ ଉପଦେଶ ଦେଇଛି ଯେ କେବଳ ସ୍ରଷ୍ଟାଙ୍କର ଉପାସନା କର, ସୃଷ୍ଟିର ଉପାସନା କରନାହିଁ । ସୁତରାଂ ଈଶ୍ୱରବାଦ ସମ୍ପର୍କରେ କୁରଆନର ଦୃଷ୍ଟିକୋଣ ହେଉଛି ଯେ ଭକ୍ତ କୌଣସି ଦୋଷ କଲେ ବା ନିୟମ ଭାଙ୍ଗିଲେ, ଈଶ୍ୱର କ୍ଷମା କରିଦେଇ ପାରନ୍ତି, କିନ୍ତୁ ତାଙ୍କ ଭିନ୍ନ ଅନ୍ୟ କାହାରି ଉପାସନା ଏକ ଅକ୍ଷମଣୀୟ ଅପରାଧ । କୁରଆନ କହେ—

إِنَّ ٱللَّهَ لَا يَغْفِرُ أَن يُشْرَكَ بِهِۦ وَيَغْفِرُ مَا دُونَ ذَٰلِكَ
لِمَن يَشَآءُ

''ଅଲ୍ଲାହ ଆଦୌ ଏହା କ୍ଷମା କରନ୍ତି ନାହିଁ ଯେ କାହାରିକୁ (ଈଶ୍ୱର ରୂପେ ଗ୍ରହଣ କରି) ତାଙ୍କ ସହ ସହଭାଗୀ କରାଯାଉ, କିନ୍ତୁ ଏହା ବ୍ୟତୀତ ଅନ୍ୟ ଯେକୌଣସି ପାପ ପାଇଁ ଯାହାକୁ ଚାହାନ୍ତି କ୍ଷମା କରିଦିଅନ୍ତି ।'' (କୁରଆନ-୪/୧୧୬)

ସେବା ଉପାସନା କେବଳ ସ୍ରଷ୍ଟାଙ୍କର ଅଧିକାର । ତାଙ୍କ ସୃଷ୍ଟିର ଅନ୍ୟ କାହାରିକୁ ତାଙ୍କ ଆସନ ଦେଇ ତା' ସେବା କରିବା ଈଶ୍ୱରଙ୍କ ପ୍ରତି ଘୋର ଅବିଚାର । ଜଣେ ପ୍ରଜାବତ୍ସଳ ରାଜା ଚାହିଁଲେ ପ୍ରଜାର ସବୁ ଅପରାଧ କ୍ଷମା କରିଦେଇ ପାରନ୍ତି, କିନ୍ତୁ ରାଜଦ୍ରୋହ ଅପରାଧ କ୍ଷମା କରନ୍ତି ନାହିଁ । ଯଦି କେହି ଅନ୍ୟ କାହାରିକୁ ତାଙ୍କ ଆସନ ଦିଏ ବା ସ୍ୱୟଂ ସିଏ ଉପସ୍ଥିତ ଥାଉ ଥାଉ ତାଙ୍କର କୌଣସି ସେବକକୁ ରାଜସମ୍ମାନ ଦିଏ, ବା ଅନ୍ୟପ୍ରତି ରାଜଭକ୍ତି ପ୍ରଦର୍ଶନ କରେ ବା ତା' ପ୍ରତି ନିଜର ଆନୁଗତ୍ୟ ପ୍ରକାଶ କରେ, ତେବେ ରାଜା ଏହାକୁ ରାଜଦ୍ରୋହର ଅପରାଧ ବିବେଚନା କରନ୍ତି । ଏଭଳି ଧରଣର ଅପରାଧ ସେ କ୍ଷମା କରନ୍ତି ନାହିଁ । ସେହି ପ୍ରଜାର ଅନ୍ୟ ସେବାଗୁଡ଼ିକୁ ସେ

ବିଚାରକୁ ନିଅନ୍ତି ନାହିଁ । ସେହିପରି ଜଣେ ପତି ନିଜ ପତ୍ନୀର ବହୁ ଅପରାଧ କ୍ଷମା କରିଦେଇପାରେ; କିନ୍ତୁ ଯଦି ସେ ଅନ୍ୟ କାହାରିକୁ ପତିର ଆସନ ଦିଏ ବା ତାକୁ ପତିଙ୍କ ସହଭାଗୀ କରେ, ତେବେ ସେ ପତ୍ନୀ ଯେତେ ସୁନ୍ଦରୀ, ଶିକ୍ଷିତା ବା ସୁଗୁଣସମ୍ପନ୍ନା ହୋଇଥାଉନା କାହିଁକି, ପତି ତାକୁ କ୍ଷମା କରେନାହିଁ। ପତ୍ନୀର ବର୍ଷ ବର୍ଷର ସେବାଯତ୍ନ ତା' ପାଇଁ ମୂଲ୍ୟହୀନ ହୋଇପଡ଼େ । ଠିକ ସେହିପରି, ଯଦି ମଣିଷ ନିଜ ପ୍ରଭୁଙ୍କ ଅଧିକାର ଅନ୍ୟ କାହାରିକୁ ପ୍ରଦାନ କରେ ତେବେ ଏହା ଈଶ୍ୱରଙ୍କ ନିକଟରେ ଈଶ୍ୱରଦ୍ରୋହ ରୂପେ ବିବେଚନା କରାଯାଏ । ଏହି କର୍ମଟି କରିଦେଲେ, ମଣିଷର ଅନ୍ୟ ସତ୍‌କର୍ମଗୁଡ଼ିକ ତାଙ୍କ ପାଇଁ ମୂଲ୍ୟହୀନ ହୋଇପଡ଼େ । ଋଗ୍‌ବେଦରେ କୁହାଯାଇଛି—

> "ହେ ମନୁଷ୍ୟଗଣ ! ଯେ କେବେ ଦେହଧାରୀ ହୋଇନାହାନ୍ତି, ଯାହାଙ୍କର କିଛି ପରିମାଣ ସୀମାର କାରଣ ନାହିଁ, ଯାହାଙ୍କର ଆଜ୍ଞାର ପାଳନ ନାମ ସ୍ମରଣ ଅଟେ, ଯେ ଉପାସିତ ହୋଇ ନିଜର ଉପାସକମାନଙ୍କ ଉପରେ ଅନୁଗ୍ରହ କରୁଛନ୍ତି, ବେଦର ଅନେକ ସ୍ଥାନରେ ଯାହାଙ୍କର ମହତ୍ତ୍ୱ କୁହାଯାଇଛି, ଯେ ମରନ୍ତି ନାହିଁ, ବିକୃତ ହୁଅନ୍ତି ନାହିଁ, ନଷ୍ଟ ହୁଅନ୍ତି ନାହିଁ, ତାହାଙ୍କର ଉପାସନା ତୁମ୍ଭେମାନେ ନିରନ୍ତର କର । ଯେ ଏହାଙ୍କଠାରୁ ଭିନ୍ନଙ୍କର ଉପାସନା କରିବ ସେ ମହାନ ପାପ ଦ୍ୱାରା ଯୁକ୍ତ ହୋଇ ନିଜେ ଦୁଃଖ କ୍ଲେଶରେ ନଷ୍ଟ ହୋଇଯିବ ।"(ଯଜୁର୍ବେଦ-୩୨/୩)

ବ୍ରହ୍ମ ଯେପରି, ତାଙ୍କୁ ଠିକ୍ ସେହିପରି ଜାଣିବା ଉଚିତ ଏବଂ ତାଙ୍କ ମର୍ଯ୍ୟାଦା ଅନୁଯାୟୀ ତାଙ୍କ ସହ ବ୍ୟବହାର କରିବା ଉଚିତ । ଉପନିଷଦରୁ ଏହାର ସଙ୍କେତ ମିଳେ—

> ଇହ ଚେଦବେଦୀଦଥ ସତ୍ୟମସ୍ତି
> ଚେଦିହାବେଦୀନ୍ ମହତୀ ବିନଷ୍ଟିଃ ।[୪୨] (କେନ-୩/୫)

---

(୪୨) इह चेदवेदीदथ सत्यमस्ति, न चेदिहावेदीन् महती विनष्टिः

If a man knows Him in this life, then well and good; if he does not know Him here, then it is a great calamity. (Kena Upanishad)

ଅର୍ଥାତ୍ ଯଦି ମଣିଷ ଏହି ଜୀବନରେ ତାଙ୍କୁ ଜାଣିନିଏ ତେବେ ଭଲ, ଯଦି ସେ ଏଠାରେ ତାଙ୍କୁ ନ ଜାଣେ, ତେବେ ଏହା ତା' ପାଇଁ ବିରାଟ ବିପଦର କାରଣ ହେବ।

ଈଶ୍ୱର କରୁଣାମୟ । ଭକ୍ତ ପଶ୍ଚାତ୍ତାପ କରି ତାଙ୍କ ପାଖକୁ ଲେଉଟି ଆସିଲେ ସେ ତା'ର ସବୁ ଦୋଷ କ୍ଷମା କରିଦିଅନ୍ତି । ସେ କହନ୍ତି—

قُلْ يٰعِبَادِىَ الَّذِيْنَ اَسْرَفُوْا عَلٰٓى اَنْفُسِهِمْ لَا
تَقْنَطُوْا مِنْ رَّحْمَةِ اللّٰهِ ۗ اِنَّ اللّٰهَ يَغْفِرُ الذُّنُوْبَ
جَمِيْعًا ۗ اِنَّهٗ هُوَ الْغَفُوْرُ الرَّحِيْمُ ﴿٥٣﴾

''(ହେ ମୁହମ୍ମଦ !) କହିଦିଅ—ହେ ମୋର ଦାସଗଣ, ଯେଉଁମାନେ ନିଜ ଆତ୍ମାପ୍ରତି ଅବିଚାର କରିଅଛ, ଅଲ୍ଲାହଙ୍କ କୃପାରୁ ନିରାଶ ହୁଅ ନାହିଁ, ଅଲ୍ଲାହ ସବୁ ପାପ କ୍ଷମା କରିଦିଅନ୍ତି, ବାସ୍ତବରେ ସେ ଅନନ୍ତ କ୍ଷମାଶୀଳ ଓ କୃପାଶୀଳ ଅଟନ୍ତି ।''

(କୁରଆନ-୩୯/୫୩)

ନିରାକାରବାଦ ସମ୍ପର୍କରେ ବାଇବଲର ଦୃଷ୍ଟିକୋଣ ମଧ୍ୟ ଆମେ ଆଲୋଚନା କଲୁ। ବେଦ, ବାଇବଲ ଓ କୁରଆନ—ବିଶ୍ୱର ତିନିଗୋଟି ମହାନ ଗ୍ରନ୍ଥ । ତିନୋଟିଯାକ ଗ୍ରନ୍ଥରେ ଯେଉଁ ତତ୍ତ୍ୱଟି ସମାନ ଭାବରେ ରହିଛି ତା'ର ଗୁରୁତ୍ୱ ସହଜରେ ଅନୁମେୟ ।



# ଉପସଂହାର

ଈଶ୍ୱର ମଙ୍ଗଳମୟ । ବିଶ୍ୱ ତାଙ୍କର ପରିବାର । ସବୁ ମଣିଷ ତାଙ୍କର ପ୍ରଜା । ତାଙ୍କର ନିକଟରେ ଉଚ୍ଚ-ନୀଚ, କଳା-ଗୋରା, ଧନୀ-ଗରିବ ବା ଛୁଆଁ ଅଛୁଆଁର ଭେଦଭାବ ନାହିଁ । ସମସ୍ତେ ତାଙ୍କ ଦୃଷ୍ଟିରେ ସମାନ ଏବଂ ସେ ସମସ୍ତଙ୍କର ମଙ୍ଗଳ କାମନା କରନ୍ତି । ନିଜ ପ୍ରଜାଙ୍କ ମଙ୍ଗଳ ପାଇଁ ସେ ଯେଉଁ ଶୃଙ୍ଖଳା ଦେଇଛନ୍ତି, ତାକୁ ଧର୍ମ କୁହାଯାଏ । ଧର୍ମ ମାନବ ପାଇଁ ଏକ ଆଚାର ସଂହିତା ଏବଂ ଏହା ସୂର୍ଯ୍ୟ-ଚନ୍ଦ୍ରର ପ୍ରକାଶ ପରି ସବୁ ଯୁଗରେ ସବୁ ମଣିଷଙ୍କ ପାଇଁ ସମାନ ଥାଏ । ସତ୍ୟ-ଅସତ୍ୟର ଓ ଧର୍ମ-ଅଧର୍ମର ପରିମାପକ ସବୁ ମଣିଷଙ୍କ ପାଇଁ ସମାନ । ନ୍ୟାୟ ଓ ନୈତିକତାର ମାନଦଣ୍ଡ ସମସ୍ତଙ୍କ ପାଇଁ ଏକ ଏବଂ ବୈକୁଣ୍ଠପ୍ରାପ୍ତିର ସାଧନ ସବୁ ମଣିଷଙ୍କ ପାଇଁ ସମାନ ।

ଯଦିଓ ଈଶ୍ୱରଙ୍କ ବିଧାନ ଆସିଛି ବିଭିନ୍ନ ଯୁଗରେ ଓ ବିଭିନ୍ନ ଭାଷାରେ, କିନ୍ତୁ ଏହା ଭିନ୍ନ ଭିନ୍ନ ଧର୍ମ ଆଣିନାହିଁ ବା ନୂଆ ନୂଆ ତତ୍ତ୍ୱ ଦେଇନାହିଁ । ଆମ ପୂର୍ବଜଙ୍କର ଗୋଟିଏ ଧର୍ମପନ୍ଥା ଥିଲା । କାଳ ପ୍ରବାହରେ ଏହା ଅନେକ ଧର୍ମରେ ବିଭାଜିତ ହୋଇଗଲା । ଧର୍ମଗ୍ରନ୍ଥଗୁଡ଼ିକରେ ସଂଶୋଧନ, ପ୍ରକ୍ଷେପଣ, ନୂଆ ଆଚାରର ମିଶ୍ରଣ ବା ବିବିଧ ଦର୍ଶନର ସମନ୍ୱୟ ଯୋଗୁଁ ଗୋଟିଏ ଧର୍ମ ଅନେକ ଧର୍ମରେ, ଜଣେ ଈଶ୍ୱର ଅନେକ ଈଶ୍ୱରରେ ଏବଂ ଗୋଟିଏ କୁଟୁମ୍ବ ଅନେକ ସମ୍ପ୍ରଦାୟରେ ବାଣ୍ଟି ହୋଇଯାଇଛନ୍ତି । ଈଶ୍ୱର ଓ ତାଙ୍କ ବିଧି ସମ୍ପର୍କରେ ଉପୁଜିଥିବା ମତଭେଦ ଗୋଟିଏ ପରିବାରକୁ ଅନେକ ସମ୍ପ୍ରଦାୟରେ ବାଣ୍ଟି ଦେଇ ସେଗୁଡ଼ିକରେ ଭିନ୍ନ ଭିନ୍ନ ସମ୍ପ୍ରଦାୟର ମୋହର ଲଗାଇଦେଇଛି ।

ତେଣୁ କୁରଆନ ମଣିଷର ମାନସପଟରୁ ହଜି ଯାଇଥିବା ଦିବ୍ୟବାର୍ତ୍ତା ତାକୁ ପୁଣି ମନେ ପକାଇ ଦେଇଛି । ଏହା କୌଣସି ନୂଆ ଈଶ୍ୱରଙ୍କ କଥା କହିନାହିଁ । ପୂର୍ବ ଅଧ୍ୟାୟଗୁଡ଼ିକରୁ ଏହା ସ୍ପଷ୍ଟ ଜାଣିହୁଏ ଯେ ଯେଉଁ ବ୍ରହ୍ମଙ୍କୁ ବେଦ ଓ ଉପନିଷଦରେ ଏକ, ଅଦ୍ୱିତୀୟ ଓ ସର୍ବଲୋକେଶ୍ୱର କୁହାଯାଇଛି, ଯାହାଙ୍କୁ ସର୍ବଜ୍ଞ, ସର୍ବଦର୍ଶୀ, ସର୍ବଶକ୍ତିମାନ୍, ସର୍ବବ୍ୟାପୀ କୁହାଯାଇଛି, ଯାହାଙ୍କୁ

ଅଜନ୍ମା, ଅବିନାଶୀ, ଅଚିନ୍ତ୍ୟ, ଅରୂପ, ଅନୁପମ ଓ ଅମୂର୍ତ୍ତ କୁହାଯାଇଛି, ତାଙ୍କୁ ହିଁ କୁରଆନରେ ଅଲ୍ଲାହ୍ କୁହାଯାଇଛି । ଏହି କାରଣରୁ କୁରଆନ ମୁସଲମାନମାନଙ୍କୁ ସମ୍ବୋଧନ କରି କହିଛି—

وَقُوْلُوْٓا اٰمَنَّا بِالَّذِیْٓ اُنْزِلَ اِلَیْنَا وَ اُنْزِلَ اِلَیْکُمْ
وَ اِلٰـھُنَا وَ اِلٰـھُکُمْ وَاحِدٌ وَّ نَحْنُ لَهٗ مُسْلِمُوْنَ

"ଏବଂ (ସେମାନଙ୍କୁ) କୁହ - ଆମ୍ଭମାନଙ୍କ ପ୍ରତି ଯେଉଁ ଗ୍ରନ୍ଥ ପ୍ରକଟ ହୋଇଛି ଏବଂ ତୁମମାନଙ୍କ ପ୍ରତି ଯାହା ପ୍ରକଟ ହୋଇଛି, ଆମେ ଉଭୟ ଗ୍ରନ୍ଥ ପ୍ରତି ବିଶ୍ୱାସ କରୁ, ଆମ ଈଶ୍ୱର ଏବଂ ତୁମ ଈଶ୍ୱର ଜଣେ ଏବଂ ଆମେ ତାଙ୍କରି ନିକଟରେ ନିଜକୁ ସମର୍ପଣ କରୁଅଛୁ ।"

(କୁରଆନ-୨୯/୪୬)

କୁରଆନ ବିଶ୍ୱର କେବଳ ଏକମାତ୍ର ଗ୍ରନ୍ଥ ଯାହା ସବୁ ଈଶ୍ୱରଦୂତ ଏବଂ ସବୁ ଦିବ୍ୟଗ୍ରନ୍ଥ ପ୍ରତି ବିଶ୍ୱାସ ଓ ଆଦର-ସମ୍ମାନ କରିବା ପ୍ରତ୍ୟେକ ଭକ୍ତ ପାଇଁ ବାଧ୍ୟତାମୂଳକ କରିଛି । ମହାମାନ୍ୟ ଈଶ୍ୱରଦୂତମାନଙ୍କ ମଧ୍ୟରେ ଭେଦଭାବ ନ କରିବାକୁ ସ୍ପଷ୍ଟ ଆଦେଶ ଦେଇଛି । କୁରଆନ ଏତିକି କହିବାକୁ ଚାହେଁ ଯେ ଅଲ୍ଲାହ୍ ତୁମର ସେହି ଈଶ୍ୱର ଯାହାଙ୍କୁ ତୁମେ ବ୍ରହ୍ମ, ଈଶ୍ୱର ବା ଗଡ୍ ଇତ୍ୟାଦି ବିଭିନ୍ନ ନାମରେ ଡାକ ଏବଂ ଯାହାଙ୍କ ପରିଚୟ ତୁମ ଗ୍ରନ୍ଥରେ ମଧ୍ୟ ଦିଆଯାଇଛି । କୁରଆନ ତୁମର ସେହି ଈଶ୍ୱରଙ୍କ ଗ୍ରନ୍ଥ ଯିଏ ପୂର୍ବରୁ ମଧ୍ୟ ବିଭିନ୍ନ ଭାଷାରେ ଅନେକ ଗ୍ରନ୍ଥ ପ୍ରକଟ କରିସାରିଛନ୍ତି । ପୂର୍ବ ଗ୍ରନ୍ଥଗୁଡ଼ିକରେ ସଂଶୋଧନ ଓ ପ୍ରକ୍ଷେପଣ ହେବା ଫଳରେ ମାନବସମାଜରେ ଧର୍ମ ନାମରେ ଅନେକ କୁସଂସ୍କାର ପ୍ରବେଶ କରିଯାଇଛି । ତେଣୁ କୁରଆନ ଦ୍ୱାରା ସେଗୁଡ଼ିକର ମୌଳିକ ଶିକ୍ଷାଗୁଡ଼ିକୁ ପୁନଃସ୍ଥାପିତ କରାଯାଇଛି । ଏହା କୌଣସି ନୂଆଧର୍ମ ବା ନୂଆ ତତ୍ତ୍ୱ ଆଣିନାହିଁ । ଏହା ଦିବ୍ୟ ଧର୍ମଧାରାର ଅନ୍ତିମ ସଂସ୍କରଣ । ଯେହେତୁ କୁରଆନ ମାନବ ସମାଜକୁ ଈଶ୍ୱରଙ୍କର ଅନ୍ତିମ ଉଦ୍‌ବୋଧନ, ଏହାର ଶୁଦ୍ଧତା ବଜାୟ ରଖିବାଲାଗି ସ୍ୱୟଂ ଈଶ୍ୱର ଏହାର ସୁରକ୍ଷା ଦାୟିତ୍ୱ ଗ୍ରହଣ କରିଛନ୍ତି । ସୁତରାଂ କୁରଆନ ଘୋଷଣା କରିଛି—

اِنَّا نَحْنُ نَزَّلْنَا الذِّكْرَ وَاِنَّا لَهٗ لَحٰفِظُوْنَ

ଇନ୍ନା ନହନୁ ନଜ୍ଜଲ୍‌ନଜ୍-ଜିକ୍‌ରା ଓଇନ୍ନା ଲହୁ ଲହାଫିଜୁନ୍

"ଆମ୍ଭେ ହିଁ ଏହି କୁରଆନ ଅବତୀର୍ଣ୍ଣ କରିଅଛୁ ଏବଂ ସ୍ୱୟଂ ଆମ୍ଭେ ହିଁ ଏହାର ସଂରକ୍ଷକ।" (କୁରଆନ-୧୫/୯)

ଅତଏବ ଆମେ ଦେଖୁ ଯେ ଦୀର୍ଘ ଚଉଦଶହ ବର୍ଷରୁ ଅଧିକ ବିତିଯାଇଥିଲେ ମଧ୍ୟ କୁରଆନର ଅକ୍ଷରଟିଏ ବି ବଦଳି ନାହିଁ । ତେଣୁ କୁରଆନ ଆଗ୍ରହ କରିଛି—

قُلْ يَاَهْلَ الْكِتٰبِ تَعَالَوْا اِلٰى كَلِمَةٍ سَوَآءٍ بَيْنَنَا
وَبَيْنَكُمْ اَلَّا نَعْبُدَ اِلَّا اللّٰهَ وَلَا نُشْرِكَ بِهٖ شَيْـًٔا وَّلَا
يَتَّخِذَ بَعْضُنَا بَعْضًا اَرْبَابًا مِّنْ دُوْنِ اللّٰهِ

"କୁହ, 'ହେ ଗ୍ରନ୍ଥଧାରୀମାନେ! ଆସ ଏମିତି କଥାଟିଏ ଗ୍ରହଣ କରିନେବା ଯାହା ତୁମ ଓ ଆମ ମଧ୍ୟରେ ସମାନ ଭାବରେ ରହିଛି ଯେ ଆମ୍ଭେମାନେ ଅଲ୍ଲାହଙ୍କ ବ୍ୟତୀତ କାହାରି ଉପାସନା କରିବା ନାହିଁ ଏବଂ କାହାରିକୁ ତାଙ୍କର ସହଭାଗୀ କରିବା ନାହିଁ ଏବଂ ଅଲ୍ଲାହଙ୍କ ବ୍ୟତୀତ ଆମେ ପରସ୍ପର ମଧ୍ୟରେ କାହାରିକୁ ଈଶ୍ୱର କରିବା ନାହିଁ ।' (କୁରଆନ-୩/୬୪)

ଏହି ଉପଦେଶ ସହିତ କୁରଆନ ମଣିଷକୁ ବିଚାରଗତ ସ୍ୱାଧୀନତା ମଧ୍ୟ ଦେଇଛି ଯେ ଧର୍ମରେ ବାଧ୍ୟବାଧକତା ନାହିଁ । ଯାହାର ଇଚ୍ଛା ମାନୁ ବା ଯାହାର ଇଚ୍ଛା ନ ମାନୁ—

لَآ اِكْرَاهَ فِي الدِّيْنِ قَدْ تَّبَيَّنَ الرُّشْدُ
مِنَ الْغَيِّ

ଲା ଇକ୍‌ରାହା ଫିଦ୍-ଦୀନି, କଦ୍-ତବୟ୍ୟ-ୟନର୍-ରୁଶ୍‌ଦୁ ମିନଲ୍ ଗୟ୍-ୟି

"ଧର୍ମ ସଂକ୍ରାନ୍ତରେ ବାଧ୍ୟବାଧକତା ନାହିଁ, ସତ୍‌ମାର୍ଗକୁ ଅସତ୍ ମାର୍ଗରୁ ପୃଥକ କରିଦିଆଯାଇଛି ।" (କୁରଆନ-୨/୨୫୬)

ମୁସଲମାନମାନେ ସବୁ ଦିବ୍ୟଗ୍ରନ୍ଥ ପ୍ରତି ଆସ୍ଥା ରଖନ୍ତି; କିନ୍ତୁ କୁରଆନର ଆଜ୍ଞା ପାଳନ କରନ୍ତି । ଏହା କୌଣସି ସାମ୍ପ୍ରଦାୟିକ ଭେଦଭାବ ଯୋଗୁଁ ନୁହେଁ; ବରଂ ଏହାର ମୁଖ୍ୟ କାରଣ, କୁରଆନ ହେଉଛି ବିଶୁଦ୍ଧ ବ୍ରହ୍ମବାଣୀ ଏବଂ ଏହା ସ୍ରଷ୍ଟାଙ୍କର ଅନ୍ତିମ ବିଧାନ । ଯେପରି ଜଣେ ପୁଅ ନିଜ ବାପାଙ୍କଠାରୁ ବିଭିନ୍ନ ସମୟରେ ଆସିଥିବା ସବୁ ପୁତ୍ରଗୁଡ଼ିକୁ 'ବାପାଙ୍କର' ବୋଲି ବିଶ୍ୱାସ କରେ; କିନ୍ତୁ ଶେଷ ପତ୍ରର ଉପଦେଶ ପାଳନ କରିଥାଏ; ଏବଂ ଯେପରି ଜଣେ କର୍ମଚାରୀ ସରକାରଙ୍କ ଦ୍ୱାରା ନିଯୁକ୍ତ ସବୁ ପଦାଧିକାରୀଙ୍କୁ ସମ୍ମାନ ଦିଏ; କିନ୍ତୁ ତତ୍କାଳୀନ ଅଧିକାରୀଙ୍କ ଆଜ୍ଞା ପାଳନ କରିବା ନିଜ କର୍ତ୍ତବ୍ୟ ମନେକରେ, ସେହିପରି ଜଣେ ମୁସଲମାନ ଭକ୍ତ ସବୁ ଦିବ୍ୟଗ୍ରନ୍ଥ ଓ ସବୁ ଈଶ୍ୱରଦୂତଙ୍କୁ ଉଚିତ ସମ୍ମାନ ଦିଏ; କିନ୍ତୁ ଅନ୍ତିମ ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ଆଜ୍ଞା ପାଳନ କରିବା ଯଥାର୍ଥ ମନେକରେ ।



# Biblography

1. Mundaka and Mandukya Upanishad, Swami Sarvananda, Sri Ramkrishnsa Math, Madras, 1920
2. Svetasvataropanishd, Swami Tyagisananda, Sri Ramkrishnsa Math, Madras, 1949
3. Kena Upansiahd, Swmi Sarvandanda, Sri Ramkrishnsa Math, Madras, 1949
4. Kena Upanishad, Pandit Ganga Prasad Upadhyaya, Delhi, 1900
5. Svetasvatarpronishad, Swami Nikhilananda
6. Atharva Veda, by Ralph T.H. Griffith, [1895]
7. Rig Veda, Odia Translation – Madhusudan Mohanty, Dharmagrantha Store, Cuttack
8. Yajur Veda, Odia Translation – Madhusudan Mohanty, Dharmagrantha Store, Cuttack
9. Bhagabat Geeta
10. The Holy Quran, Abdullah Yusuf Ali
11. The Holy Bible, New International Version, New York International Bible Society, 1978
12. Pavitra Bible (Odia), The Bible Society of India, Bangalore
13. Bhakti Yoga, Godabarish Mohapatra, Grantha Mandir, Cuttack
14. Ishwara Kiye (Odia) , Prof. Vikash Panda, Dhenkanal, 2012
15. Dharma Kana, Kahinki, Keunthipain (Odia), Dr. Uzagar Patel, Mita Books, Cuttack, 2010
16. Hinduism, Monier Williams, London, 1885
17. Indian Wisdom, Monier Williams, London, 1876

18. History of India, Mount Stuart Elphinstone, Vol.1, London,

19. The Discovery of India, Jawaharlal Nehru, New Delhi

20. Shanti Paigam (Hindi), Acharya Vishnudev Pandit & Acharya Dr. Rajendra Prasad Mishra, Rampur, UP

21. Quran Saar (Hindi), Binoba, Banarasi, 2007

22. Santha Bhakti Sahitya (Odia), Chitaranjan Das, Odisha Sahitya Academy, 1082

23. Dwaitabad Samikshya (Odia), Pandit Trinath Sarangi

24. Sahityare Mulyabodha (Odia), Sachidananda Routray

25. Encyclopedia Britannica, Ultimate Reference Suite, Chicago, 2011

26. Alvan Lamson, DD, The Church of the First Three Centuries, Boston, 1860

27. Hugh H. Stannus, A History of the Origin of the Doctrine of the Trinity in the Christian Church, London, 1882,

28. Edward, Gibbon, Life of Mahommed, London

John Davenport, An apology for Mohammed and the Koran, London, 1869

29. Bharatare Murti Pujara Utpati O' Parinama, Prof. Rajendra, Oriya Translation - Yagyan Prakash Dash, Baidika Anusandhan Pratisthana, 139 Sahid Nagar, BBSR-12



# ଇକ୍‌ରା ରିସର୍ଚ୍ଚ ଏକାଡେମୀ ଦ୍ୱାରା ପ୍ରକାଶିତ ଲେଖକଙ୍କ ପୁସ୍ତକ

## ୧. ବେଦ, ବାଇବଲ ଏବଂ କୁର୍‌ଆନରେ ଏକେଶ୍ୱରବାଦ

ସମସ୍ତଙ୍କର ମାଲିକ ଜଣେ । ଏକ ଈଶ୍ୱରଙ୍କୁ ବିଭିନ୍ନ ଭାଷାରେ ବିଭିନ୍ନ ନାମରେ ଡକାଯାଏ । ପୃଥିବୀପୃଷ୍ଠରେ ଆସିଥିବା ସବୁ ଦିବ୍ୟଗ୍ରନ୍ଥଗୁଡ଼ିକ ଈଶ୍ୱର ଏକ ବୋଲି କହିଛନ୍ତି । ଇସ୍‌ଲାମ ଧର୍ମର ଏକେଶ୍ୱରବାଦର ସିଦ୍ଧାନ୍ତଟି ଯେ ହିନ୍ଦୁ, ଖ୍ରୀଷ୍ଟିୟାନ, ୟହୁଦୀ ତଥା ମୁସଲମାନମାନଙ୍କ ସର୍ବୋଚ୍ଚ ଗ୍ରନ୍ଥ ବେଦ, ବାଇବଲ ଓ କୁର୍‌ଆନରେ ସମାନ ଭାବରେ ରହିଛି, ଏହା ଲେଖକ ପ୍ରମାଣିତ କରିଛନ୍ତି ତାଙ୍କର ଏହି ଗବେଷଣାଧର୍ମୀ ପୁସ୍ତକଟିରେ । ଏଥିରେ ଓଡ଼ିଆଭାଷୀ ମୁସଲମାନମାନଙ୍କୁ 'ତୌହିଦ୍' ବା ଏକେଶ୍ୱରବାଦ ତତ୍ତ୍ୱ ସମ୍ପର୍କରେ ସ୍ୱଷ୍ଟ ଧାରଣା ଦେବା ସହିତ ଚାରିଗୋଟି ଭିନ୍ନ ଭିନ୍ନ ଧର୍ମଗ୍ରନ୍ଥର ଅନୁଗାମୀମାନଙ୍କୁ ଏକତା ଓ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧି ରଖିବାର ଏକ ସୁନ୍ଦର ପ୍ରୟାସ କରିଛନ୍ତି ଲେଖକ । ପୁସ୍ତକଟି ସାମ୍ପ୍ରଦାୟିକ ସମନ୍ୱୟର ଉନ୍ନତି ପଥରେ ସହାୟକ ହୋଇପାରିବ ।

## ୨. ଇସ୍‌ଲାମ ଏବଂ ମାନବିକତା

ଏବେ ଇସ୍‌ଲାମ ଏକ ବର୍ବର ଓ ଅମାନବୀୟ ଧର୍ମ ରୂପେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟିଯାଇଛି । ଜନସମାଜରେ ଏହି ଧର୍ମ ବିଷୟରେ ଅନେକ ଭ୍ରମଧାରଣା ବଦ୍ଧମୂଳ ହୋଇରହିଛି, ଯଥା—ଏହା ଏକ ନିଷ୍ଠୁର ଧର୍ମ, ତରବାରୀ ମୁନରେ ଏହାର ପ୍ରସାର ହୋଇଛି, ଅନ୍ୟାୟ ଓ ଆତଙ୍କବାଦର ଏହା ଶିକ୍ଷା ଦିଏ ଏବଂ ଏଥିରେ ଦୟା, ପ୍ରେମ ବା ମାନବିକତା ନାହିଁ ଇତ୍ୟାଦି ଇତ୍ୟାଦି । ଏହି ପୁସ୍ତକଟିରେ ଲେଖକ ଏହି ଭ୍ରମ ଧାରଣାଗୁଡ଼ିକ ଦୂର କରିବାର ପ୍ରୟାସ କରିଛନ୍ତି ଏବଂ ଇସ୍‌ଲାମ ଯେ ଏକ ସମ୍ପୂର୍ଣ୍ଣ ମାନବବାଦୀ ଧର୍ମ ଏହା ପ୍ରମାଣିତ କରିଛନ୍ତି ।

## ୩. ଇସ୍‌ଲାମ ପରିଚୟ

ଇସ୍‌ଲାମ ଏକ ଶାନ୍ତିପ୍ରିୟ ଧର୍ମ । ଏଥିରେ ଅସତ୍ୟ, ଅନ୍ୟାୟ, ଅତ୍ୟାଚାର ବା ଆତଙ୍କବାଦର କୌଣସି ସ୍ଥାନ ନାହିଁ । ଇସ୍‌ଲାମର ପରିଚୟ ପ୍ରଦାନ କରି ପ୍ରକାଶ ପାଇଛି ଲେଖକଙ୍କର ଅନୁପମ ଗବେଷଣାତ୍ମକ ଗ୍ରନ୍ଥ 'ଇସ୍‌ଲାମ ପରିଚୟ' । ଏଥିରେ ଧର୍ମର ସିଦ୍ଧାନ୍ତ ଓ ମୌଳିକ ନୀତି ନିୟମଗୁଡ଼ିକ ବିଷୟରେ ସୁନ୍ଦର ଭାବରେ ଆଲୋଚନା କରାଯାଇଛି । ଇସ୍‌ଲାମ ଯେ ଏକ ଆଦିଧର୍ମ ତଥା ଏକ ଆଦର୍ଶ ଜୀବନଶୈଳୀ, ଲେଖକ ବିଭିନ୍ନ ପ୍ରାଚୀନ ଧର୍ମଶାସ୍ତ୍ରଗୁଡ଼ିକର ସହାୟତାରେ ଏହା ପ୍ରମାଣିତ କରିଛନ୍ତି । ଧର୍ମ କ'ଣ, ଧର୍ମର ଆବଶ୍ୟକତା, ଶାନ୍ତି ପ୍ରତିଷ୍ଠାରେ ଧର୍ମର ଭୂମିକା, ଗୋଟିଏ ଜାତି-ଗୋଟିଏ ଧର୍ମ, ମଣିଷର ପ୍ରାକୃତିକ ଧର୍ମ, ଧର୍ମରେ ନୈତିକ ମୂଲ୍ୟବୋଧ ଆଦି ବିଷୟ ଉପରେ ଆଲୋଚନା ଏଥିରେ ସ୍ଥାନ ପାଇଛି । ଏହାବ୍ୟତୀତ ଇସ୍‌ଲାମରେ ଥିବା ମାନବବାଦ ଓ ମାନବାଧିକାରଗୁଡ଼ିକ ଉପରେ ବିସ୍ତୃତ ଆଲୋଚନା ମଧ୍ୟ ଗ୍ରନ୍ଥଟିର ଅନ୍ୟତମ ବୈଶିଷ୍ଟ୍ୟ । ଏହି ଗ୍ରନ୍ଥଟି ସବୁ ଧର୍ମର ଭାଇଭଉଣୀଙ୍କୁ ଇସ୍‌ଲାମକୁ ବୁଝିବାରେ ସାହାଯ୍ୟ କରିବ । ଏହାବ୍ୟତୀତ ସାମ୍ପ୍ରଦାୟିକ ସଦ୍‌ଭାବର ଉନ୍ନତି ତଥା ତୁଳନାତ୍ମକ ଧର୍ମ ଅଧ୍ୟୟନ କ୍ଷେତ୍ରରେ ମଧ୍ୟ ଏହା ସହାୟକ ହେବ ।

## ୪. ପୁନର୍ଜୀବନ କାହିଁକି

ପୁନର୍ଜୀବନ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଓ ୟହୁଦୀ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ରହିଥିବା ଏକ ସମଭାବାପନ୍ନ ଚିନ୍ତାଧାରା । ଏହା ଇସ୍‌ଲାମର ଏକ ମୌଳିକ ଶିକ୍ଷା ଏବଂ ବେଦ ଓ ବାଇବଲ୍ ସମ୍ମତ ଏକ ସିଦ୍ଧାନ୍ତ । ଯଦିଓ ପୁନର୍ଜୀବନର ସ୍ୱରୂପ ସମ୍ପର୍କରେ କିଛିଟା ମତଭେଦ ରହିଛି, ତଥାପି କର୍ମଫଳ ଯେ ଏହାର ଉଦ୍ଦେଶ୍ୟ—ଏ ବିଷୟରେ ଈଶ୍ୱରବାଦୀମାନଙ୍କ ମଧ୍ୟରେ ମତଭେଦ ନାହିଁ । ପୁନର୍ଜୀବନ, ପରଲୋକ, ସ୍ୱର୍ଗ ଓ ନର୍କ—ସମସ୍ତ ଈଶ୍ୱରବିଶ୍ୱାସୀମାନଙ୍କ ନିକଟରେ ଏକ ସତ୍ୟ ରୂପେ ଗୃହୀତ ଏବଂ ମନୁଷ୍ୟ ଯେ ନିଜ କର୍ମ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ, ଏହାକୁ କୌଣସି ଧର୍ମମତ ଅସ୍ୱୀକାର କରେନାହିଁ ।

ଏହି ପୁସ୍ତକଟିରେ ଲେଖକ ଇସ୍‌ଲାମରେ ଥିବା ପୁନର୍ଜୀବନର ସିଦ୍ଧାନ୍ତର ତର୍ଜମା କରିବା ସହ ଏହାର ଆବଶ୍ୟକତା ଓ ଉପକାରୀତା ଉପରେ ଆଲୋକପାତ କରିଛନ୍ତି । ମନୁଷ୍ୟକୁ କିପରି ସଂସାରର ଶ୍ରେଷ୍ଠତମ ପ୍ରାଣୀ ରୂପେ ସୃଷ୍ଟି କରାଯାଇଛି, ତା' ସୃଷ୍ଟିର ଉଦ୍ଦେଶ୍ୟ କ'ଣ, ନିଜ କର୍ମ ପାଇଁ ସେ

କାହିଁକି ଉତ୍ତରଦାୟୀ ଏବଂ ଏହି ଉତ୍ତରଦାୟିତ୍ୱବୋଧ ମନୁଷ୍ୟ ଜୀବନକୁ କିଭଳି ଭାବେ ପ୍ରଭାବିତ କରିଥାଏ, ଏହା ସୁନ୍ଦର ଭାବରେ ଆଲୋଚନା କରିଛନ୍ତି । ପୁସ୍ତକଟି ପ୍ରତ୍ୟେକ ମଣିଷକୁ ନିଜର ଉତ୍ତରଦାୟିତ୍ୱ ସମ୍ପର୍କରେ ସଚେତନ କରିବାରେ ସାହାଯ୍ୟ କରିପାରିବ ।

## ୫. ମହାମାନ୍ୟ ମୁହମ୍ମଦ

ଗ୍ରନ୍ଥଟି ମହାପୁରୁଷ ମୁହମ୍ମଦଙ୍କ ଜୀବନୀ ଓ ଆଦର୍ଶର ଏକ ରସାଳ ଉପସ୍ଥାପନା । ତର୍କସଙ୍ଗତ ଓ ତଥ୍ୟଭିତ୍ତିକ ବିଷୟବସ୍ତୁ ଉପରେ ଆଧାରିତ ଏହା ଏକ ଗବେଷଣାଧର୍ମୀ ଗ୍ରନ୍ଥ ଯେଉଁଥିରେ ଲେଖକ ମହାମାନ୍ୟ ମୁହମ୍ମଦଙ୍କ ଚଳଣୀ ଓ ଚରିତ୍ର ତଥା ନୀତି ଓ ଆଦର୍ଶର ବର୍ଣ୍ଣନା କରିବା ସହିତ ସେ ଯେ ଜଣେ ଈଶ୍ୱରଦୂତ, ଏହା ପ୍ରମାଣିତ କରିଛନ୍ତି । ନଅଟି ଅଧ୍ୟାୟବିଶିଷ୍ଟ ଏହି ଗ୍ରନ୍ଥଟିରେ ମହାମାନ୍ୟ ମୁହମ୍ମଦଙ୍କ ସଂକ୍ଷିପ୍ତ ଜୀବନୀ, ବିଭିନ୍ନ ଐତିହାସିକ, ଦାର୍ଶନିକ ଓ ଚିନ୍ତକମାନଙ୍କ ମତାମତ, ଈଶ୍ୱରଦୂତମାନଙ୍କ ଅବତରଣର ପରମ୍ପରା ଓ ଏହାର କାରଣ, ସେମାନଙ୍କ ଶିକ୍ଷା, ସେମାନଙ୍କ ବୈଶିଷ୍ଟ୍ୟ, ମହାମାନ୍ୟ ମୁହମ୍ମଦଙ୍କ ଈଶ୍ୱରଦୂତ ହେବାର ପ୍ରମାଣ, ତାଙ୍କ ଚମତ୍କାରିତା ଓ ଭବିଷ୍ୟବାଣୀ, ତାଙ୍କ ହିତୋପଦେଶ, ବିଭିନ୍ନ ଧର୍ମଗ୍ରନ୍ଥରେ ତାଙ୍କ ଆଗମନର ଅଗ୍ରସୂଚନା ଓ ସେଗୁଡ଼ିକରେ ତାଙ୍କ ଦର୍ଶନର ସାମଞ୍ଜସ୍ୟ, ପବିତ୍ର କୁରଆନର ବୈଜ୍ଞାନିକ ପ୍ରମାଣସିଦ୍ଧତା ଆଦି ପ୍ରସଙ୍ଗ ଉପରେ ତଥ୍ୟଭିତ୍ତିକ ଆଲୋଚନା ସ୍ଥାନ ପାଇଛି । ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ସମ୍ପର୍କରେ ଜାଣିବାପାଇଁ ଏହା ଏକ ଅତି ଉପାଦେୟ ଗ୍ରନ୍ଥ ।

## ୬. ଜିହାଦ୍ ଓ ଆତଙ୍କବାଦ

ସାଂପ୍ରତିକ ପରିସ୍ଥିତିରେ ଜିହାଦ୍ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ବିଭିନ୍ନ ସ୍ଥାନରେ ହେଉଥିବା ଆତଙ୍କବାଦୀ କାର୍ଯ୍ୟକଳାପ ଜିହାଦ୍ ସମ୍ପର୍କରେ ବହୁ ଲୋକଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ଏହି ପୁସ୍ତକରେ ଲେଖକ ଜିହାଦ୍‌ର ତାତ୍ପର୍ଯ୍ୟ ବର୍ଣ୍ଣନା କରିଛନ୍ତି । ଇସ୍‌ଲାମର ଯୁଦ୍ଧତତ୍ତ୍ୱର ତୁଳନାତ୍ମକ ବ୍ୟାଖ୍ୟା କରି ଲେଖକ ଧର୍ମଯୁଦ୍ଧ ଓ ଆତଙ୍କବାଦ ମଧ୍ୟରେ ଥିବା ପ୍ରଭେଦକୁ ସ୍ପଷ୍ଟ କରିଛନ୍ତି । ପୁସ୍ତକଟି ଜିହାଦ୍ ସମ୍ପର୍କରେ ଥିବା ଅନେକ ଭ୍ରାନ୍ତି ଦୂର କରିବାରେ ସହାୟକ ହେବ ।

